ଣାର୍ଥେ ଗୋଟିଏ ସଭାର ଅଧିବେଶନ କରାଯାଇ ଉକ୍ତ ସଭାର କାର୍ଯ୍ୟାବଳୀ ଯଥା ସମୟରେ ଶ୍ରୀ ସର୍କାରଙ୍କ ଶ୍ରୀଛାମୁଙ୍କୁ ତଥା ଉତ୍କଳର ସମ୍ବାଦ ପତ୍ରାଦିକୁ ପଠା ଯାଇ ଥିଲା । ସେହି ଆନନ୍ଦ ପ୍ରକାଶର ସ୍ମୃତି-ଚିହ୍ନାର୍ଥେ ଏହି ପୁସ୍ତକଟି ଶ୍ରୀଛାମୁଙ୍କ କରକମଳରେ ଅର୍ପଣ କରୁଅଛୁଁ ମାତ୍ର । ଆମ୍ଭେ ଜାଣୁ ଏହା ଛାମୁଙ୍କ ପକ୍ଷେ ଉପଯୁକ୍ତ ଉପହାର ନୁହେଁ, ମାତ୍ର ଉଦାରଗୁଣ ଛାମୁଙ୍କ ଠାରେ ଅଭାବ ନଥିବା ଜାଣିପାରି ଏ କାର୍ଯ୍ୟରେ ହସ୍ତକ୍ଷେପ କରିବା ପ୍ରତି ସାହସୀ ହୋଇଅଛୁଁ । ଛାମୁ ସେହି ଉଦାରତା ଦ୍ୱାରା ଏହା ସାଦରେ ଗ୍ରହଣ କଲେ ଆମ୍ଭେ ଧନ୍ୟ ମନେ କରିବୁ ।

ସର୍ବ ଶେଷରେ ବକ୍ତବ୍ୟ ଏହି ଯେ, ଛାମୁ ସୁଦୀର୍ଘ ଜୀବନ ଲାଭ କରି ରାଜସିଂହାସନ ମଣ୍ଡନ ପୁରଃସର ପୁତ୍ର ପ୍ରତିମ ପ୍ରଜାବୃନ୍ଦଙ୍କୁ ସୁଖରେ ପାଳନ କରୁଥାନ୍ତୁ, ଏହାହିଁ ଆନ୍ତରିକ କାମନା ।

ପୁସ୍ତକ ପ୍ରକାଶ କମିଟି<br>ବଡ଼ଖେମଣ୍ଡି<br>୧୭-୭-୬୧ }

ବିନୟାବନତ<br>ଶ୍ରୀ ଭୀମସେନ ପାଣିଗ୍ରାହୀ<br>ପ୍ରୋପ୍ରାଇଟର



# ପ୍ରକାଶକର ନିବେଦନ

ପ୍ରିୟ ପାଠକ ପାଠିକା ବୃନ୍ଦ !

ସ୍ୱାସ୍ଥ୍ୟହିଁ ସମସ୍ତଙ୍କର ପ୍ରଧାନ ସମ୍ପତ୍ତି । ସ୍ୱାସ୍ଥ୍ୟହୀନ ବ୍ୟକ୍ତି ଧନାଢ୍ୟ କୁବେର ହୋଇଥିଲେ ମଧ୍ୟ ଆପଣାର ଜୀବନକୁ ଅସାର ମଣିଥାଏ । ଆଜି କାଲି ମଫସଲାଞ୍ଚଳରେ ଚିକିତ୍ସାର କୌଣସି ସୁବ୍ୟବସ୍ଥା ହୋଇ ନଥିବାରୁ ବିଶେଷତଃ ଉପଯୁକ୍ତ ଚିକିତ୍ସକର ଅଭାବ ଥିବା ହେତୁ ମଫସଲବାସୀ ଯେଉଁ ଦାରୁଣ କ୍ଲେଶାନୁଭବ କରୁଥାନ୍ତି, ତାହା ଏହି କ୍ଷୁଦ୍ର ନିବେଦନ ପତ୍ରରେ ଲେଖିବା ସହଜସାଧ୍ୟ ନୁହେଁ ।

ଏହି "ପୀଯୂଷ ପେଟିକା"ରେ ସାଧାରଣ ନାଡ଼ୀ ଲକ୍ଷଣ, ରୋଗ ଆରମ୍ଭ ମାତ୍ରେ ତା'ର ଉପଶମର ସୁବ୍ୟବସ୍ଥା ଅର୍ଥାତ୍ ପାଚନ ପ୍ରଣାଳୀ ମାତ୍ର ସନ୍ନିବେଶିତ ହୋଇଅଛି । ଏହି ପୁସ୍ତକ ପ୍ରକାଶ ଦ୍ୱାରା ସର୍ବ ସାଧାରଣଙ୍କ ଉପକାର ହେବା ଜାଣି ପାରିଲେ ଦ୍ୱିତୀୟ ସଂସ୍କରଣର କଳେବର ବୃଦ୍ଧି କରି ସେଥିରେ ବିବିଧ ପ୍ରକାର ପ୍ରତ୍ୟକ୍ଷ-ଫଳ-ପ୍ରଦ ଔଷଧ ପ୍ରସ୍ତୁତ କରିବା ପ୍ରଣାଳୀ ପ୍ରକାଶ କରିବୁଁ ।

ଉପସଂହାରରେ ୫ ୭-୧୯୩୧ ରେ ବାବୁ ନିରଞ୍ଜନ ପଟ୍ଟନାୟକଙ୍କ ଦ୍ୱାରା "ପଲ୍ଲୀବାର୍ତ୍ତା" ପତ୍ରିକାରେ ପ୍ରକାଶିତ ପ୍ରବନ୍ଧଟି ପ୍ରକାଶ କରି ପାଠକ ପାଠିକାମାନଙ୍କ ଠାରୁ ବିଦାୟ ଗ୍ରହଣ କରିବୁଁ ।



## "ଅଭାବର ଅଭିଯୋଗ"

ପଲ୍ଲୀବାସୀଙ୍କ ଅବସ୍ଥା, ଶିକ୍ଷା, ସଭ୍ୟତା, ସ୍ୱାସ୍ଥ୍ୟ ଇତ୍ୟାଦି ବିଷୟକୁ ନେଇ ସମ୍ବାଦପତ୍ରରେ ଇତିପୂର୍ବେ "ଗଡ଼ଜାତ ବାସିନୀ"ରେ ନନ୍ଦିଗ୍ରାମର ବାବୁ ଭୀମସେନ ପାଣିଗ୍ରାହୀ ଯେଉଁ ପ୍ରବନ୍ଧଗୁଡ଼ିକ ପ୍ରକାଶ କରିଥିଲେ ତଦ୍ୱାରା ଦେଶର କିଛି ନା କିଛି ଉପକାର ହୋଇଥିବାର

Digitized by srujanika@gmail.com

ଆଶା କରେ । ଅନ୍ୟାନ୍ୟ ଅସୁବିଧା ମଧ୍ୟରେ ପଲ୍ଲୀବାସୀଙ୍କ ସ୍ୱାସ୍ଥ୍ୟ ହେଉଛି ପ୍ରଧାନ । ସେଥିପ୍ରତି ଆଲୋଚନା କରିବା ଦେଶବାସୀଙ୍କ ସର୍ବ ପ୍ରଥମ ଓ ପ୍ରଧାନ କାର୍ଯ୍ୟ ।

ଅତ୍ୟନ୍ତ ଦୁଃଖର ସହିତ ଜଣାଉ ଅଛୁଁ ଯେ, ସେଦିନ କାର୍ଯ୍ୟ ସୂତ୍ରରେ ମୁଁ ବଡ଼ଖେମଣ୍ଡି ରାଜ୍ୟାନ୍ତର୍ଗତ ଖମାରଗାଁ ନାମକ ଗ୍ରାମକୁ ଯାଇ-ଥିଲି । ସେଠାର ଓ ଆଖ ପାଖ ଗ୍ରାମର ଲୋକମାନଙ୍କ ଜ୍ୱରରେ ପଡ଼ିଥିଲେ; ଔଷଧର ସୁବ୍ୟବସ୍ଥା ହେବା ଦୂରେ ଥାଉ, ଶୁଣ୍ଠି ,ପିପଳୀ, ମରିଚ ବାଟି ଦେବା ପାଇଁ ଜଣେ ସାଧାରଣ ବୈଦ୍ୟ ମଧ୍ୟ ସେଠାରେ କେହି ନାହାନ୍ତି । ଏହି ଅବସ୍ଥା ଉଣା ଅଧିକରେ ଗଞ୍ଜାମ ଜିଲ୍ଲାର ପ୍ରତ୍ୟେକ ଗ୍ରାମକୁ ଯେ ଆକ୍ରମଣ କରିଛି, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଏହାର ଆଶୁ ପ୍ରତିକାର ଶୀଘ୍ର ହେବା ଦରକାର ।

ବଡ଼ଖେମୁଣ୍ଡିର ବାବୁ ରାମସେନ ପାଣିଗ୍ରାହୀ 'ପୀଯୂଷ ପେଟିକା' ଶୀର୍ଷକ ଯେଉଁ ପୁସ୍ତକଟି ଲେଖିଛନ୍ତି,ତାହା ଅତି ଶୀଘ୍ର ରାମଚନ୍ଦ୍ର ସାହିତ୍ୟ କୁଞ୍ଜର ଦ୍ୱିତୀୟ ଦୃଶ୍ୟ ସ୍ୱରୂପ ଦେଖା ଦେବ। ଉକ୍ତ ପୁସ୍ତକ ପ୍ରକାଶ ଦ୍ୱାରା ପଲ୍ଲୀବାସୀଙ୍କର ବିଶେଷ ଉପକାର ହେବାର ପୂର୍ଣ୍ଣ ସମ୍ଭାବନା । ଏଥି ସମ୍ବନ୍ଧେ ଅଧିକ ଲେଖିବା ବାହୁଲ୍ୟ ମାତ୍ର । ପୁସ୍ତକ ପ୍ରକାଶ ପରେ ମୋର ଅଭିମତର ସତ୍ୟାସତ୍ୟ ଜଣାଯିବ ।

ଦଗପହଣ୍ଡି
୧୫-୭-୧୯୩୧

ଶ୍ରୀ ନାରାୟଣ ପାଣିଗ୍ରାହୀ
ମାନେଜର, ପୁସ୍ତକ ପ୍ରକାଶ କମିଟି

---

Digitized by srujanika@gmail.com

# ଅଫିମ ଛାଡିବା ଉପାୟ



ଦୁଇଟି ଉପାୟ ଦ୍ୱାରା ଅଫିମ ଛଡ଼ାଯାଇ ଥାଏ---

ତାହା ଏହି—

ସର୍ବ ପ୍ରଥମେ ଲୋକଟା ଯେତେ ଅଫିମ ଦୈନିକ ଖାଇଥାଏ, କୋଡ଼ିଏ ଦିନର ମୋଟ କରି ଉକ୍ତ ଅଫିମ ଗୋଟିଏ ଶିଶିରେ ରଖି ସେଥିରେ ଅଫିମ ଅନୁପାତରେ ଜଳ (କୋଡ଼ିଏ ପା କିମ୍ବା ଅର୍ଦ୍ଧ ତୋଳା ଅଥବା ତୋଳା ଇତ୍ୟାଦି) ମିଶାଇ ରଖିବ। ପ୍ରତିଦିନ ସେଥିରୁ (ଶିଶିସ୍ଥ ଜଳକୁ କୋଡ଼ିଏ ଦିନରେ ଭାଗ କରି) ଯେଉଁ ପରିମାଣ ଜଳ ପାନ କରିବ ସେହି ପରିମାଣ ନିର୍ମଳ ଜଳ ପୁଣି ଶିଶିସ୍ଥ ଜଳରେ ମିଶାଇ ଶିଶି ମୁହଁ ବନ୍ଦ କରି ରଖିବ। ଏହିପରି କୋଡ଼ିଏ ଦିନ ସେବନ କଲେ ଅଫିମ ଅଭ୍ୟାସ ଛଡ଼ିଯାଇ ଥାଏ।

ଏହା ସଙ୍ଗେ ସଙ୍ଗେ ତୋପଚିନି କିଛି ଆଣି ତାକୁ ଛେଳି ଦୁଧରେ ସିଝାଇ ସେହି ତୋପଚିନିକୁ ଛେଚି ଗୁଣ୍ଡ କରି ରଖିବ। ପ୍ରତିଦିନ ଚା ବା କାଫି ପ୍ରସ୍ତୁତ କଲା ପରି କରି ଚିନି, କ୍ଷୀର ସହିତ ଏହି ତୋପଚିନିଗୁଣ୍ଡ-ସିଝା ଜଳ ପାନ କରିବାକୁ ଦେବ।

ଧନ୍ୟବାଦ--- ଏହି ପୂର୍ବୋକ୍ତ ଉପାୟ ଦୁଇଟି ଅମ୍ଭମାନଙ୍କର ଶ୍ରଦ୍ଧେୟ କବିରାଜ ଶ୍ରୀମାନ ଚୈତନ୍ୟ ପାଠୀ ମହାଶୟ ଏହି ପୁସ୍ତକରେ ପ୍ରକାଶ କରିବା କାରଣ ଦେଇଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛୁଁ।

ପ୍ରକାଶକ

Digitized by srujanika@gmail.com

# ପୀୟୂଷ-ପେଟିକା



ରୋଗ ପରୀକ୍ଷା—ଯାହାର ଯେଉଁ ନାମ, ସେହି ନାମାନୁସାରେ ନ ଡ଼ାକିଲେ ସେ ଯେପରି ଶୁଣେ ନାହିଁ ଓ ଉତ୍ତର ଦିଏ ନାହିଁ, ତଦ୍ରୂପ ଯଥାଯଥ ଭାବରେ ରୋଗ ପରୀକ୍ଷା କରି ଉକ୍ତ ରୋଗର ପାଚନ ବା ଔଷଧର ବ୍ୟବସ୍ଥା କରି ନଗଲେ ଫଳ ବିଷମୟ ହୋଇଥାଏ । ଅର୍ଥାତ୍ ରାମକୁ ଗୋବିନ୍ଦ ବୋଲି ଡ଼ାକିଲେ ସେ ଯେପରି ଶୁଣେ ନାହିଁ, ବରଂ ଚିଡ଼ୁଥାଏ ସେହିପରି ବାତଜ୍ୱରାକ୍ରାନ୍ତ ବ୍ୟକ୍ତିକୁ ପିତ୍ତଜ୍ୱରର ପାଚନ ବା ଔଷଧ ଦେଲେ ତଦ୍ୱାରା ରୋଗୀର ଅନିଷ୍ଟ ଛଡ଼ା ଇଷ୍ଟ ସାଧନ କେବେହେଁ ହୋଇ ନଥାଏ । ଅତଏବ ସର୍ବପ୍ରଥମେ ରୋଗ ପରୀକ୍ଷା କରିବାକୁ ହେବ ।

ରୋଗ ପରୀକ୍ଷାର ତିନି ଗୋଟି ଉପାୟ ଅଛି । ୧ ଶାସ୍ତ୍ର ଯାହା କହୁଛି, ୨ ପ୍ରତ୍ୟକ୍ଷ ଘଟଣା ସବୁ ଦେଖିବ, ୩ ଅନୁମାନ କରିବାକୁ ମଧ ହେବ । ପ୍ରଥମେ ରୋଗୀ ନିକଟକୁ ଯାଇ ତାର ଲକ୍ଷଣମାନ ଦେଖି, ଶାସ୍ତ୍ରର ଉପଦେଶ ସହିତ ସେସବୁ ମିଳାଇବାକୁ ହେବ । ତାପରେ ତାଠାରୁ ସମସ୍ତ ବିଷୟ ବୁଝି ରୋଗୋପଶମର ବ୍ୟବସ୍ଥା କରିବାକୁ ହେବ ।

ନାଡ଼ୀ ପରୀକ୍ଷା—ପୁରୁଷର ଦକ୍ଷିଣ ଓ ସ୍ତ୍ରୀର ବାମ, ହସ୍ତ ଦ୍ୱାରା ନାଡୀ ପରୀକ୍ଷା କରିବା ସକାଶେ ଶାସ୍ତ୍ର କହୁଛି ।

ହସ୍ତର ମଣିବନ୍ଧ ସ୍ଥାନରେ ବୃଦ୍ଧାଙ୍ଗୁଳିର (ଅଙ୍ଗୁଷ୍ଠ) ମୂଳ ଭାଗରେ ଗୋଟିଏ ଗଣ୍ଠି ଅଛି । ତାର ତଳଦେଶରେ ଅଙ୍ଗୁଳି ସ୍ପର୍ଶ ଦ୍ୱାରା ନାଡ଼ୀ ପରୀକ୍ଷା ଅର୍ଥାତ୍ ପ୍ରଥମେ ରୋଗିର ନାଡ଼ିକା ଉପରେ ତିନି ଅଙ୍ଗୁଳି ଅର୍ଥାତ୍ ତର୍ଜ୍ଜନୀ, ମଧ୍ୟମା, ଅନାମିକା ଏପରି ପକାଇ ଚିପି ପରୀକ୍ଷା କରିବାକୁ ହେବ । ତର୍ଜନୀ ଅଙ୍ଗୁଳିର ନୀଚରେ ନାଡ଼ୀର ଯେଉଁ ପ୍ରଥମ ସ୍ପନ୍ଦନ

Digitized by srujanika@gmail.com

ହେବ, ତଦ୍ୱାରା ବାୟୁର, ଦ୍ୱିତୀୟ ସ୍ପନ୍ଦନ ଦ୍ୱାରା ପିତ୍ତର, ତୃତୀୟ ସ୍ପନ୍ଦନ ଦ୍ୱାରା କଫର ଗତିଭେଦ ପ୍ରଭୃତି ନିଷ୍ପନ୍ନ କରିବାକୁ ହେବ । ଅଭିନବ-ଚିନ୍ତାମଣି କହନ୍ତି ଯେ,--ତର୍ଜ୍ଜନୀର ନୀଚରେ ଯେଉଁ ସ୍ପନ୍ଦନ ହୁଏ, ତଦ୍ୱାରା ପିତ୍ତ, ମଧ୍ୟମାର ନିମ୍ନବର୍ତ୍ତୀ ସ୍ପନ୍ଦନ ଦ୍ୱାରା ବାତ ଏବଂ ଅନାମିକାର ନିମ୍ନବର୍ତ୍ତୀ ସ୍ପନ୍ଦନ ଦ୍ୱାରା କଫ ଅନୁମାନ କରିବାକୁ ହେବ, ମାତ୍ର ଏହା ତାଦୃଶ ପ୍ରଚଳିତ ନୁହେ ବା ସର୍ବବାଦୀ-ସମ୍ମତ ନୁହେ ।

ନାଡ଼ୀ ପରୀକ୍ଷାର ନିଷିଦ୍ଧ ସମୟ--ତୈଳ ମର୍ଦ୍ଦନ ପରେ, ଭୋଜନ ଶେଷରେ, କ୍ଷୁଧା ବା ତୃଷାର୍ତ୍ତ ସମୟରେ, ଅଗ୍ନି ବା ରୌଦ୍ର ତାପରେ ସନ୍ତପ୍ତ ଥିବା ସମୟରେ, ବେଶି ପରିଶ୍ରମ କଲା ପରେ ଏସବୁ ସମୟରେ ନିଷିଦ୍ଧ କାରଣ ନାଡ଼ୀର ଗତି ଏହି ସକଳ ସମୟରେ ବିକୃତ ହୋଇ ଉଠିଥାଏ ।

ଦୋଷ ପ୍ରକୋପ ଭେଦରେ ନାଡ଼ୀର ଗତି ଯଥା--ଅସୁସ୍ଥା-ବସ୍ଥାରେ ବାୟୁର ଆଧିକ୍ୟରେ ବକ୍ର, ପିତ୍ତର ଆଧିକ୍ୟରେ ଚଞ୍ଚଳ, କଫା-ଧିକ୍ୟରେ ସ୍ଥିର ଭାବରେ ନାଡ଼ୀ ସ୍ପନ୍ଦିତ ହୋଇଥାଏ । ସନ୍ନିପାତରେ କେତେବେଳେ ଧୀର, କେତେବେଳେ ଚଞ୍ଚଳ, କେତେବେଳେ ରହି ରହି--ସମାନ ଭାବରେ ଗତି କରେ । ଯେଉଁମାନେ ଚିକିତ୍ସା ଶାସ୍ତ୍ର ଭଲ ଭାବରେ ଅଧ୍ୟୟନ କରିଛନ୍ତି, ସେମାନଙ୍କ ନିକଟରେ ଏହି ପୁସ୍ତକ ପ୍ରଚୁର ଧୃଷ୍ଟତାର ପରିଚୟ ମାତ୍ର । ସେମାନଙ୍କ ସକାଶେ ଏହା ପ୍ରଣୟନ ବା ସଙ୍କଳିତ ହୋଇନାହିଁ । ଏହା ଯେଉଁମାନଙ୍କ ପାଇଁ ସଂଗୃହୀତ ହୋଇଅଛି, ସେମାନଙ୍କର ଏତଦ୍ୱାରା କିଛି ନା କିଛି ଉପକାର ହେଲେ ଶ୍ରମ ସାର୍ଥକ ଜ୍ଞାନ କରିବୁଁ ।

ପାଚନ ପ୍ରସ୍ତୁତ ପ୍ରଣାଳୀ--ପାଚନରେ ଯେତୋଟି ଦ୍ରବ୍ୟ ଥିବ, ସେସବୁ ସମାନ ଭାବରେ ନେଇ ଏକତ୍ର କଲେ ସମୁଦାୟର ଓଜନ

Digitized by srujanika@gmail.com

ଯେପରି ଦୁଇ ତୋଳା ହେବ । ଦୁଇଟି ଦ୍ରବ୍ୟ ଥିଲେ ପ୍ରତ୍ୟେକେ ଏକ ତୋଳା ହିସାବରେ ନେବାକୁ ହେବ, ଚାରୋଟି ଦ୍ରବ୍ୟ ଥିଲେ ପ୍ରତ୍ୟେକେ ଅର୍ଦ୍ଧ ତୋଳା, ଆଠଟି ଦ୍ରବ୍ୟ ଥିଲେ ପ୍ରତ୍ୟେକେ ସିଉକି ଓଜନ ନେବାକୁ ହେବ । ଏହିପରି ଯେତେ ପଦ ଥିଲେ ମଧ୍ୟ ସମୁଦାୟର ଓଜନ ଯେପରି ଦୁଇ ତୋଳା ମାତ୍ର ହେବ ତହିଁ ପ୍ରତି ଦୃଷ୍ଟି ଦେବାକୁ ହେବ ଏବଂ ଦେଶ, କାଳ, ପାତ୍ର ଭେଦରେ ଦୁଣ ଅଧିକ ହେବା ବିଧେୟ । ଏସବୁ ପଦାର୍ଥ ଭଲ ଭାବରେ କୁଟି ଅର୍ଦ୍ଧ ସେର ଜଳରେ ସିଦ୍ଧ କରି ଏକ ଚତୁର୍ଥାଂଶ ପରିମାଣ ଜଳ ଥିବା ସମୟରେ ଓହ୍ଲାଇ, ଭଲ ଭାବରେ ଛାଣି ପାନ କରିବାକୁ ହେବ । ପାଚନରେ କୌଣସି ଦ୍ରବ୍ୟ ପ୍ରକ୍ଷେପ କରି ପିଇ-ବାର ବ୍ୟବସ୍ଥା ଥିଲେ, ସେହି ପ୍ରକ୍ଷେପ ଦ୍ରବ୍ୟ ଅର୍ଦ୍ଧ ତୋଳାରୁ ଅଧିକ ହେବ ନାହିଁ । ଗୋଟିଏ ଦ୍ରବ୍ୟ ପ୍ରକ୍ଷେପ ଉଲ୍ଲେଖ ଥିଲେ ଅର୍ଦ୍ଧ ତୋଳା, ଦୁଇଟି ଥିଲେ ପ୍ରତ୍ୟେକେ ସିଉକି ଓଜନ, ଚାରୋଟି ଦ୍ରବ୍ୟ ଥିଲେ ଦୁଇଅଣା ଓଜନ ଏପରି ନେବାକୁ ହେବ । ସଦା ପ୍ରସ୍ତୁତ ପାଚନ ଭିନ୍ନ ବାସି ପାଚନ ପିଇବାକୁ ହେବ ନାହିଁ ।

## ପାରିଭାଷିକ ସଂଜ୍ଞା—

ଦୋଷ--ବାୟୁ, ପିତ୍ତ ଓ କଫ ଏହି ତିନି ଗୋଟି ଶାରୀରିକ ଦୋଷ । ତ୍ରିଦୋଷ ଶବ୍ଦ ଯେଉଁଠାରେ ଉଲ୍ଲେଖ ଥିବ, ସେଠାରେ ବାୟୁ, ପିତ୍ତ ଓ କଫ (ଶ୍ଳେଷ୍ମା) ଏହି ତିନୋଟି ବୋଲି ବୁଝିବାକୁ ହେବ ।

ମଳ--ମଳ, ମୂତ୍ର, ଘର୍ମ, କ୍ଳେଦ, ସିଂଘାଣି ପ୍ରଭୃତିକୁ ମଳ କୁହାଯାଏ ।

କୋଷ୍ଠ--ଗ୍ରହଣୀ ନାଡ଼ୀ, ପାକାଶୟ, ମୂତ୍ରାଶୟ, ରକ୍ତାଶୟ, ଯକୃତ ଓ ପ୍ଳୀହା, ହୃଦୟ, ଫୁସ୍ ଫୁସ୍ ଓ ଗୁହ୍ୟ ନାଡ଼ୀ, ଏସବୁକୁ କୋଷ୍ଠ କୁହାଯାଏ ।

Digitized by srujanika@gmail.com

ହେବ, ତଦ୍ୱାରା ବାୟୁର, ଦ୍ୱିତୀୟ ସ୍ପନ୍ଦନ ଦ୍ୱାରା ପିତ୍ତର, ତୃତୀୟ ସ୍ପନ୍ଦନ ଦ୍ୱାରା କଫର ଗତିଭେଦ ପ୍ରଭୃତି ନିଶ୍ଚୟ କରିବାକୁ ହେବ । ଅଭିନବ-ଚନ୍ଦ୍ରାମଣି କହନ୍ତି ଯେ,--ତର୍ଜ୍ଜନୀର ନୀଚରେ ଯେଉଁ ସ୍ପନ୍ଦନ ହୁଏ, ତଦ୍ୱାରା ପିତ୍ତ, ମଧ୍ୟମାର ନିମ୍ନବର୍ତ୍ତୀ ସ୍ପନ୍ଦନ ଦ୍ୱାରା ବାତ ଏବଂ ଅନାମିକାର ନିମ୍ନବର୍ତ୍ତୀ ସ୍ପନ୍ଦନ ଦ୍ୱାରା କଫ ଅନୁମାନ କରିବାକୁ ହେବ, ମାତ୍ର ଏହା ପ୍ରାୟ ପ୍ରଚଳିତ ନୁହେ ବା ସର୍ବବାଦୀ-ସମ୍ମତ ନୁହେ ।

ନାଡ଼ୀ ପରୀକ୍ଷାର ନିଷିଦ୍ଧ ସମୟ--ତୈଳ ମର୍ଦ୍ଦନ ପରେ, ଭୋଜନ ଶେଷରେ, କ୍ଷୁଧା ବା ତୃଷାର୍ତ୍ତ ସମୟରେ, ଅଗ୍ନି ବା ରୌଦ୍ର ତାପରେ ସନ୍ତପ୍ତ ଥିବା ସମୟରେ, ବେଶି ପରିଶ୍ରମ କଲା ପରେ ଏସବୁ ସମୟରେ ନିଷିଦ୍ଧ। କାରଣ ନାଡ଼ୀର ଗତି ଏହି ସକଳ ସମୟରେ ବିକୃତ ହୋଇ ଉଠିଥାଏ ।

ଦୋଷ ପ୍ରକୋପ ଭେଦରେ ନାଡ଼ୀର ଗତି ଯଥା--ଅସୁସ୍ଥା-ବସ୍ଥାରେ ବାୟୁର ଆଧିକ୍ୟରେ ବକ୍ର, ପିତ୍ତର ଆଧିକ୍ୟରେ ଚଞ୍ଚଳ, କଫା-ଧିକ୍ୟରେ ସ୍ଥିର ଭାବରେ ନାଡ଼ୀ ସ୍ପନ୍ଦିତ ହୋଇଥାଏ । ସନ୍ନିପାତରେ କେତେବେଳେ ଧୀର, କେତେବେଳେ ଚଞ୍ଚଳ, କେତେବେଳେ ରହି ରହି--ସମାନ ଭାବରେ ଗତି କରେ । ଯେଉଁମାନେ ଚିକିତ୍ସା ଶାସ୍ତ୍ର ଭଲ ଭାବରେ ଅଧ୍ୟୟନ କରିଛନ୍ତି, ସେମାନଙ୍କ ନିକଟରେ ଏହି ପୁସ୍ତକ ପ୍ରଣୟନ ଧୃଷ୍ଟତାର ପରିଚୟ ମାତ୍ର । ସେମାନଙ୍କ ସକାଶେ ଏହା ପ୍ରଣୟନ ବା ସଙ୍କଳିତ ହୋଇନାହିଁ । ଏହା ଯେଉଁମାନଙ୍କ ପାଇଁ ସଂଗୃହୀତ ହୋଇଅଛି, ସେମାନଙ୍କର ଏତଦ୍ୱାରା କିଛି ନା କିଛି ଉପକାର ହେଲେ ଶ୍ରମ ସାର୍ଥକ ଜ୍ଞାନ କରିବୁଁ ।

ପାଚନ ପ୍ରସ୍ତୁତ ପ୍ରଣାଳୀ--ପାଚନରେ ଯେତୋଟି ଦ୍ରବ୍ୟ ଥିବ, ସେସବୁ ସମାନ ଭାବରେ ନେଇ ଏକତ୍ର କଲେ ସମୁଦାୟର ଓଜନ

Digitized by srujanika@gmail.com

ଯେପରି ଦୁଇ ତୋଳା ହେବ । ଦୁଇଟି ଦ୍ରବ୍ୟ ଥିଲେ ପ୍ରତ୍ୟେକେ ଏକ ତୋଳା ହିସାବରେ ନେବାକୁ ହେବ, ଚାରୋଟି ଦ୍ରବ୍ୟ ଥିଲେ ପ୍ରତ୍ୟେକେ ଅର୍ଦ୍ଧ ତୋଳା, ଆଠଟି ଦ୍ରବ୍ୟ ଥିଲେ ପ୍ରତ୍ୟେକେ ସିକିକ ଓଜନ ନେବାକୁ ହେବ । ଏହିପରି ପେଟଡ ପଦ ଥିଲେ ମଧ୍ୟ ସମୁଦାୟର ଓଜନ ଯେପରି ଦୁଇ ତୋଳା ମାତ୍ର ହେବ ତହିଁ ପ୍ରତି ଦୃଷ୍ଟି ଦେବାକୁ ହେବ ଏବଂ ଦେଶ, କାଳ, ପାତ୍ର ଭେଦରେ ଉଣା ଅଧିକ ହେବା ବିଧେୟ । ଏସବୁ ପଦାର୍ଥ ଭଲ ଭାବରେ କୁଟି ଅର୍ଦ୍ଧ ସେର ଜଳରେ ସିଦ୍ଧ କରି ଏକ ଚତୁର୍ଥାଂଶ ପରିମାଣ ଜଳ ଥିବା ସମୟରେ ଓହ୍ଲାଇ, ଭଲ ଭାବରେ ଛାଣି ପାନ କରିବାକୁ ହେବ । ପାଚନରେ କୌଣସି ଦ୍ରବ୍ୟ ପ୍ରକ୍ଷେପ କରି ପିଇ-ବାର ବ୍ୟବସ୍ଥା ଥିଲେ, ସେହି ପ୍ରକ୍ଷେପ ଦ୍ରବ୍ୟ ଅର୍ଦ୍ଧ ତୋଳାରୁ ଅଧିକ ହେବ ନାହିଁ । ଗୋଟିଏ ଦ୍ରବ୍ୟ ପ୍ରକ୍ଷେପ ଉଲ୍ଲେଖ ଥିଲେ ଅର୍ଦ୍ଧ ତୋଳା, ଦୁଇଟି ଥିଲେ ପ୍ରତ୍ୟେକେ ସିକିକ ଓଜନ, ଚାରୋଟି ଦ୍ରବ୍ୟ ଥିଲେ ଦୁଇଅଣା ଓଜନ ଏପରି ନେବାକୁ ହେବ । ସଦା ପ୍ରସ୍ତୁତ ପାଚନ ଭିନ୍ନ ବାସି ପାଚନ ପିଇବାକୁ ହେବ ନାହିଁ ।

## ପାରିଭାଷିକ ସଂଜ୍ଞା—

ଦୋଷ--ବାୟୁ, ପିତ୍ତ ଓ କଫ ଏହି ତିନି ଗୋଟି ଶାରୀରିକ ଦୋଷ । ତ୍ରିଦୋଷ ଶବ୍ଦ ଯେଉଁଠାରେ ଉଲ୍ଲେଖ ଥିବ, ସେଠାରେ ବାୟୁ, ପିତ୍ତ ଓ କଫ (ଶ୍ଳେଷ୍ମା) ଏହି ତିନୋଟି ବୋଲି ବୁଝିବାକୁ ହେବ ।

ମଳ--ମଳ, ମୂତ୍ର, ଘର୍ମ, କ୍ଳେଦ, ସିଂଘାଣି ପ୍ରଭୃତିକୁ ମଳ କୁହାଯାଏ ।

କୋଷ୍ଠ--ଗ୍ରହଣୀ ନାଡ଼ୀ, ପାକାଶୟ, ମୂତ୍ରାଶୟ, ରକ୍ତାଶୟ, ଯକୃତ ଓ ପ୍ଳୀହା, ହୃଦୟ, ଫୁସ୍ ଫୁସ୍ ଓ ଗୁହ୍ୟ ନାଡ଼ୀ, ଏସବୁକୁ କୋଷ୍ଠ କୁହାଯାଏ ।

Digitized by srujanika@gmail.com

ପଞ୍ଚବାୟୁ--ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ ଏହି ପାଞ୍ଚଟିକୁ ପଞ୍ଚବାୟୁ କହାଯାଏ ।

ତ୍ରିଫଳା--ହରଡ଼ା, ବାହାଡ଼ା, ଅଁଳା ।

ତ୍ରିକଟୁ--ଶୁଣ୍ଠି, ପିପ୍ପଳୀ, ମରିଚ ।

ତ୍ରିମଦ- ବଡ଼ଙ୍ଗ, ମୁଥା ଓ ଶତାମୂଳ ।

ତ୍ରିଜାତ--ଦାରୁଚିନି, ବଡ଼ ଅଳାଇଚ, ତେଜପତ୍ର, ତ୍ରିଜାତ ସହିତ ନାଗକେଶର ମିଳିତ ହେଲେ ତାହାକୁ ଚତୁର୍ଜାତ କହାଯାଏ ।

ପଞ୍ଚକୋଳ--- ପିପ୍ପଳୀ, ପିପଳାମୂଳ, ଚଇଁକାଠ, ଶତାମୂଳ, ଶୁଣ୍ଠି ଏ ସମସ୍ତକୁ ପଞ୍ଚକୋଳ କହାଯାଏ ।

ପଞ୍ଚଗବ୍ୟ---ଦଧି, ଦୁଗ୍ଧ, ଘୃତ, ଗୋ-ମୂତ୍ର ଓ ଗୋମୟ ଏ ପାଞ୍ଚଟିକୁ ପଞ୍ଚଗବ୍ୟ କହାଯାଏ ।

ପଞ୍ଚପିତ୍ତ--- ବରାହ, ଛାଗ, ମହିଷ, ରୋହି ମାଛ ଓ ମୟୂର ଏ ପାଞ୍ଚଟି ଜୀବର ପିତ୍ତକୁ ପଞ୍ଚପିତ୍ତ କହାଯାଏ ।

ପଞ୍ଚ ଲବଣ--- ସୈନ୍ଧବ, ସଚଳ, ବିଟ, ସମୁଦ୍ର, ଉଦ୍ଭିଦ ଏ ସବୁ ପଞ୍ଚ ଲବଣ କହାଯାଏ । ଏ ସବୁରୁ କୌଣସି ଏକ ଅଭାବରେ ସୈନ୍ଧବ ଲବଣ ବ୍ୟବହାର କରାଯାଏ ।

ସ୍ୱଳ୍ପ ପଞ୍ଚମୂଳ--ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ବୃହତୀ, କଣ୍ଟକାରି (ଭେଜି) ଓ ଗୋକ୍ଷୁର ଏ ସବୁକୁ ସ୍ୱଳ୍ପ ପଞ୍ଚମୂଳ କହାଯାଏ ।

ବୃହତ୍ ପଞ୍ଚମୂଳ-- ବେଲ, ଫଣଫଣା, ଗମ୍ଭାରି, ପାଟଳି ଓ ଅଗିବଥୁ ଏହି ପାଞ୍ଚଟିକୁ ବୃହତ୍ ପଞ୍ଚମୂଳ କହାଯାଏ ।

Digitized by srujanika@gmail.com

ଦଶମୂଳ---ଉପରୋକ୍ତ ସ୍ୱଳ୍ପ ପଞ୍ଚମୂଳ ଓ ବୃହତ୍ ପଞ୍ଚମୂଳ ଏକତ୍ର ମିଶାଇଲେ, ତାହାକୁ ଦଶମୂଳ କହାଯାଏ ।

ଦଶମୂଳ-- ବେଲ, ଫଣଫଣା, ଗମ୍ଭାରି, ପାଟଳୀ, ଅଗିବଥୁ, କୃଷ୍ଣ-ପର୍ଣ୍ଣି, ଶାଳପର୍ଣ୍ଣି, ଗୋଖର୍, ଅଙ୍କରାନ୍ତି ଓ ଭେଙ୍କ ।

ଚତୁର୍ଦ୍ଦଶାଙ୍ଗ ପାଚନ-- ଦଶମୂଳ, ତ୍ରିକଟୁ, ଚିରାଇତା, (ଦଶ-ମୂଳ, ଶୁଣ୍ଠି, ଚିରାଇତା, ଗୁଳୁଚ, ମୁଥା)

ମୂତ୍ର ପରୀକ୍ଷା-- ବାତ ପ୍ରକୋପାବସ୍ଥାରେ, ମୂତ୍ରସ୍ଥ ତୈଳ ବିନ୍ଦୁ (ମୂତ୍ରରେ ତୈଳ ବିନ୍ଦୁ ପଡ଼ିବା ମାତ୍ରେ) ବୁଦ୍ ବୁଦ୍ ଆକାର ଧାରଣ କରେ,କଫ ପ୍ରକୋପରେ ତୈଳ ବିନ୍ଦୁ ସେହିପରି ରହେ । ପିତ୍ତ ପ୍ରକୋ-ପରେ ଅତି ଶୀଘ୍ର ପ୍ରସାରିତ ହୁଏ, ସନ୍ନିପାତାବସ୍ଥାରେ ତୈଳ ମୂତ୍ରରେ ପଡ଼ିବା ମାତ୍ରେ ବିନ୍ଦୁଟି ସେହିପରି ଅବସ୍ଥାରେ ନିମ୍ନଗାମୀ ହୁଏ ।



## ପରିମାଣ ବିଧି



୬ ସର୍ଷପରେ ଏକ ଯବ, ୩ ଯବ ବା ୪ ଧାନରେ ୧ ରତି । ୨ ରତିରେ ୧ ଅଣା । ୧୨ ରତି ବା ୮ ଅଣାରେ ୧ ମଷା । ୪ ମଷାରେ ୧ ଅର୍ଦ୍ଧ ତୋଳା । ଅର୍ଦ୍ଧ ତୋଳାଟିରେ ଏକ କୋଲ ବା ତୋଳା, ୨ କୋଲ ବା ତୋଳାରେ ୧ କର୍ଷ । ୨ କର୍ଷରେ ୧ ଶୁକ୍ତି ବା ଅର୍ଦ୍ଧ ପଲ (୪ ତୋଳା), ୨ ଶୁକ୍ତି ବା ୮ ତୋଳାରେ ୧ ପଲ । ୨ ପଲରେ ୧ ପ୍ରସୃତି । ୨ ପ୍ରସୃତିରେ ୧ ଅଞ୍ଜଳି ବା କୁଡ଼ବ । ୨ କୁଡ଼ବରେ ୧ ସେର । ୨ ସେରରେ ୧ ପ୍ରସ୍ଥ । ୪ ପ୍ରସ୍ଥରେ ୧ ଆଢ଼କ । ୪ ଆଢ଼କରେ ୧ ଦ୍ରୋଣ । ୨ ଦ୍ରୋଣରେ ୧ କୁମ୍ଭ । ୧୦୦ ପଲରେ ୧ ତୋଳା (12 ½

Digitized by srujanika@gmail.com

ସେର) ମହଣକ ୪୦ ସେର, ସେରକ ୧୬ ଛଟାଙ୍କି, ଛଟାଙ୍କିକ ୫ ତୋଳା, ୬ ଛଟାଙ୍କିରେ ୧ ପା, ୪ ପାରେ ୧ ସେର ।

ବ୍ୟାଧିର୍-ପ୍ରକାର୍-ଭେଦ--ବ୍ୟାଧି ଦୁଇ ପ୍ରକାର, ଶାରୀରିକ ଓ ମାନସିକ । ଜ୍ୱର, ଉଦରାମୟ, ପ୍ରମେହ ଇତ୍ୟାଦି ଶାରୀରିକ; ଉନ୍ମାଦ ଅପସ୍ମାରାଦି ମାନସିକ ବ୍ୟାଧି ।

ବ୍ୟାଧିର୍ କାରଣ-- ବାୟୁ, ପିତ୍ତ ଓ କଫ ଏହି ତିନୋଟିର ସମଷ୍ଟି ଶକ୍ତି ପ୍ରଭାବରେ ଦେହୀର ଦେହ ରକ୍ଷା ହୋଇଥାଏ । ଯେତେ-ବେଳେ ଏହି ତିନୋଟି ମଧ୍ୟରୁ କୌଣସି ଗୋଟିଏ କୁପିତ ହୁଏ, ତେତେ-ବେଳେ ଶରୀର ମଧ୍ୟରେ ରୋଗ ଜନ୍ମେ । ଏହି ତିନୋଟିର ସାମ୍ୟାବସ୍ଥା ହେଉଛି ସୁଖର ନିଦାନ ।

ଆୟୁର୍ବେଦ ଶାସ୍ତ୍ରରେ କଥିତ ଅଛି, ବ୍ୟାଧି ମଧ୍ୟରେ ବା ସମସ୍ତ ରୋଗର ରାଜା ହେଉଛି ଜ୍ୱର । ବାସ୍ତବରେ କହିବାକୁ ଗଲେ ଜ୍ୱର ପରି କଷ୍ଟସାଧ୍ୟ ବ୍ୟାଧି କିଛି ହେଲେ ନାହିଁ । ଜ୍ୱର ହେବା ମାତ୍ରେ ଔଷଧ ସେବନ କରିବା କର୍ତ୍ତବ୍ୟ ନୁହେ । ସର୍ବ ପ୍ରଥମେ ଲଙ୍ଘନ (ଉପବାସ) ଜ୍ୱର ରୋଗୀ ପକ୍ଷେ ସୁବ୍ୟବସ୍ଥା ଅଟେ । ଅନନ୍ତର ପାଚନ ସେବନ କରି-ବାକୁ ହେବ । ନବ ଜ୍ୱରରେ ସ୍ନାନ କରିବାକୁ ହେବ ନାହିଁ । ଲଙ୍ଘନ ବା ଉପବାସ ଦ୍ୱାରା ଆମ-ରସ ପରିପାକ ହୋଇ ଶରୀର ଲଘୁ ହୁଏ ଓ ପାଚନ ବା ଔଷଧ କ୍ରିୟାକୁ ସାହାଯ୍ୟ କରେ; ଅତଏବ ଲଙ୍ଘନ ସର୍ବ ପ୍ରଥମେ କରିବା ଦ୍ୱାରା ରୋଗୀର କି ହିତସାଧନ ହୋଇଥାଏ, ତାହା ସହଜେ ଜଣା ପଡ଼ୁଛି । ଜ୍ୱରାବସ୍ଥାରେ ପେଟୁକ ବ୍ରାହ୍ମଣ ପରି ଏଣୁ ତେଣୁ ଗୁଡ଼ାଏ ଖାଇବ ନାହିଁ, ବିଶେଷ କ୍ଷୁଧା ହେଲେ ସାଗୁ, ବାର୍ଲି ଇତ୍ୟାଦି ଅର୍ଥାତ୍ ଲଘୁପାକ ଦ୍ରବ୍ୟ ଖାଇବାକୁ ହେବ ।



Digitized by srujanika@gmail.com

# ଜ୍ୱରାଧିକାର



ଜ୍ୱର ରୋଗ ଆଠ ପ୍ରକାର, ଯଥା— ବାତଜ, ପିତ୍ତଜ, ଶ୍ଳେଷ୍ମଜ, ବାତପୈତ୍ତିକ, ବାତଶ୍ଳେଷ୍ମଜ, ପିତ୍ତଶ୍ଳେଷ୍ମଜ, ସନ୍ନିପାତଜ ଓ ଆଗନ୍ତୁଜ । ନିୟମିତ ଭାବରେ ଆହାର ବିହାର ନକଲେ ଶରୀରସ୍ଥ ବାତାଦି ଦୋଷ ପ୍ରକୁପିତ ହୋଇଥାନ୍ତି । ଏମାନେ ଖାଲରେ ନରହି ଆମାଶୟ ସ୍ଥାନକୁ ଯାଇ ଆମରସକୁ ଦୂଷିତ ଓ କୋଷ୍ଠାଗ୍ନିକୁ ବାହାରକୁ ଟାଣି ଆଣି ଜ୍ୱରର ସୃଷ୍ଟି କରିଥାନ୍ତି । ଅଗ୍ନି ଶରୀରର ବାହାରକୁ ଆସେ ବୋଲି ଜ୍ୱର ସମୟରେ ଶରୀରର ଚର୍ମ ଉଷ୍ଣ ହୋଇଥାଏ ।

ଦୋଷ ଭେଦରେ ଜ୍ୱରର ଲକ୍ଷଣ— କମ୍ପ, ଓଷ୍ଠ କଣ୍ଠ ଶୁଖିବା, ଅନିଦ୍ରା, ସର୍ବାଙ୍ଗ ପୁଣି ମୁଣ୍ଡ ଓ ବୁକରେ ଅଧିକ ବେଦନା, ଶୂଳ ରୋଗ ପରି ପେଟ ବଥାଇବା, ହାଇ ମାରିବା; ଏସବୁ ହେଉଛି ବାତ ଜ୍ୱରର ଲକ୍ଷଣ । ବାନ୍ତି, ଅଳ୍ପ ନିଦ୍ରା, ତରଳ ମଳ ଭେଦ, ଗଳା, ଓଷ୍ଠ, ନାସିକା ଓ ମୁଖରେ କ୍ଷତ ହେବା, ମୂର୍ଚ୍ଛା, ଦାହ, ପିପାସା, ମଳ ମୂତ୍ର ଓ ଚର୍ମ ହଳଦିଆ ବର୍ଣ୍ଣ ହେବା, ଘର୍ମ, ପ୍ରଳାପ, ମୁଖ ତିକ୍ତ ବୋଧ, ଶରୀର ଅସ୍ଥିର, ଏ ସବୁ ଲକ୍ଷଣ ପିତ୍ତ ଜ୍ୱରର । ଅଳ୍ପ ବେଗ, ଆଳସ୍ୟ, ଅନ୍ନରେ ଅରୁଚି; ଶୀତାନୁଭବ, ଶରୀର ଭାର ବୋଧ, ଶରୀରସ୍ଥ ଲୋମଗୁଡ଼ିକ ଠିଆ ହେବା, ମୁଖ ଓ ନାସିକାରୁ ରକ୍ତ ସ୍ରାବ, କାଶ, ଅତି ନିଦ୍ରା ଏ ସବୁ ଲକ୍ଷଣ କଫ ଜ୍ୱରର ।

ବାତ-ପିତ୍ତ ଜ୍ୱରରେ ତୃଷ୍ଣା, ମୂର୍ଚ୍ଛା, ଦାହ, ଦେହ ବୁଲାଇ ହେବା, ନିଦ୍ରା ନହେବା, ମୁଣ୍ଡ ବ୍ୟଥା, ଗଳା ଓ ମୁଖ ଶୁଖିବା, ବାନ୍ତି, ରୋମାଞ୍ଚ, ଅରୁଚି, ଅନ୍ଧକାର ଦେଖାଯିବା, ସନ୍ଧି ସ୍ଥାନରେ ବେଦନା ଓ ହାଇ ଉଠିବା, ଏ ସବୁ ଲକ୍ଷଣ ଦେଖାଯାଏ । ବାତ-ଶ୍ଳେଷ୍ମଜ ଜ୍ୱରରେ—ଅତି ନିଦ୍ରା, ସନ୍ଧିସ୍ଥଳ ବେଦନା, ମୁଣ୍ଡବ୍ୟଥା, ନାସିକା ଓ ମୁଖରୁ ଜଳସ୍ରାବ,

Digitized by srujanika@gmail.com

କାଶ, ଘର୍ମ୍ମ, ଜ୍ୱରର ବେଗ ବେଶି ତୀକ୍ଷ୍ଣ ବା ବେଶି ମୃଦୁ ନହେବା, ଏ ସବୁ ଲକ୍ଷଣ ଦେଖାଯାଏ । ପିତ୍ତ-ଶ୍ଳେଷ୍ମ ଜ୍ୱରରେ ମୁଖ ଶ୍ଳେଷ୍ମା ଦ୍ୱାରା ଆବୃତ ଓ ତିକ୍ତ ବୋଧ, ତନ୍ଦ୍ରା, ମୂର୍ଚ୍ଛା, କାଶ, ଅରୁଚି, ତୃଷ୍ଣା, କେବେ କେବେ ଗ୍ରୀଷ୍ମ, କେବେ କେବେ ଶୀତ ବୋଧ ହେବା ଏ ସବୁ ଲକ୍ଷଣ ଦେଖାଯାଏ ।

**ସନ୍ନିପାତ ଜ୍ୱରର ଲକ୍ଷଣ**—କେବେ କେବେ ଦାହ, କେବେ ବା ଶୀତ ବୋଧହୁଏ । ହାଡ଼ର ସନ୍ଧି ସ୍ଥାନ ଓ ମସ୍ତକରେ ବେଦନା, ଚକ୍ଷୁ ଦ୍ୱୟ ଜଳପୂର୍ଣ୍ଣ, ତନ୍ଦ୍ରା, ମୂର୍ଚ୍ଛା, ପ୍ରଳାପ, କାଶ, ଶ୍ୱାସ, ଅରୁଚି, ଭ୍ରମ, ଜିହ୍ୱା ଗୋ ଜିହ୍ୱା ପରି ଖଦଡ଼ିଆ, ଅଙ୍ଗ ସବୁ ଶିଥିଳ ବୋଧହୁଏ, ମୁଖରୁ ଅଳ୍ପ ଅଳ୍ପ ରକ୍ତ ବା ପିତ୍ତ କଫ ସହିତ ବାହାରେ । ତୃଷ୍ଣା, ଅନିଦ୍ରା, ବୁକରେ ବେଦନା, ଅନେକ କ୍ଷଣ ଛାଡ଼ି ଛାଡ଼ି ମଳ, ମୂତ୍ର, ଘର୍ମାଦିର ଅଳ୍ପ ଅଳ୍ପ ନିର୍ଗମ, ଗଳା ମଧ୍ୟରେ ସବୁବେଳେ ଘଡ଼ର ଘଡ଼ର ଶବ୍ଦ, ଶରୀରରେ ରକ୍ତ ବର୍ଣ୍ଣ ଚକ୍କା (ଫୋଟକା) ଉତ୍ପତ୍ତି, ନାକ ଓ ମୁଖରେ କ୍ଷତ, ଅଳ୍ପ କଥା କହିବା, ପେଟ ଭାର କ୍ରୋଧ, ଏସମସ୍ତ ଲକ୍ଷଣ ସନ୍ନିପାତ ଜ୍ୱରରେ ଦେଖା ଯାଇଥାଏ । ସନ୍ନିପାତ ଜ୍ୱରର ଶେଷ ଅବସ୍ଥାରେ ଯଦି କର୍ଣ୍ଣ ମୂଳରେ ଶୋଥ ହୁଏ, ତେବେ ସେହି ରୋଗୀର ମୃତ୍ୟୁ ଯେ ଅବଶ୍ୟମ୍ଭାବୀ ଏଥିରେ ସନ୍ଦେହ ନାହିଁ ।

ନବଜ୍ୱର ଚିକିତ୍ସା  ବେଲପତର ଓ ଅଦା ସମପରିମାଣରେ ଆଣି ଭଲ ଭାବରେ ଧୋଇ ତହିଁରୁ ଏକ ଛଟାଙ୍କି ରସ ବାହାର କରିବ । ଉକ୍ତ ରସ ଗରମ କରି ତହିଁରେ ଅର୍ଦ୍ଧ ଅଣା ଓଜନର ସୈନ୍ଧବ ଲବଣ ମିଶାଇ ପ୍ରାତଃକାଳରେ ଓ ସନ୍ଧ୍ୟା କାଳରେ ପାନ କରିବାକୁ ହେବ । ଏଥିରେ ଜ୍ୱର ଏବଂ ଶରୀର ବେଦନା ଉଣା ପଡ଼େ ଏବଂ କୋଷ୍ଠ ପରିଷ୍କାର ମଧ୍ୟ ହୁଏ ।

Digitized by srujanika@gmail.com

ନବ ଜ୍ୱରରେ କୋଷ୍ଠ ପରିଷ୍କାର — ସାଧାରଣ କୋଷ୍ଠ ପରିଷ୍କାର ନିମିତ୍ତ ହରିଡ଼ା ୧ ସିଉକି ଓଜନ, ସୈନ୍ଧବ ଲବଣ ଦୁଇ ଅଣା ଓଜନ, ଏ ଦୁଇଟି ପଦାର୍ଥ ଏକତ୍ର ଗୁଣ୍ଡ କରି ଗରମ ଜଳ ସହ ସେବନ କଲେ ନବ ଜ୍ୱରର କୋଷ୍ଠ ପରିଷ୍କାର ହୁଏ ।



## ବାତଜ୍ୱର ଚିକିତ୍ସା



ଚିରାଇତା, ମୁଥା, ଗୁଳୁଚି, କୁରୁବଲି, ବୃହତୀ, କଣ୍ଟକାରୀ, ଗୋକ୍ଷୁର ଶାଳପର୍ଣ୍ଣୀ ଓ ଶୁଣ୍ଠି ଏସବୁର କ୍ୱାଥ ସେବନ କଲେ ଅତଶୀଘ୍ର ବାତ-ଜ୍ୱର ଛାଡ଼ ଯାଏ ।

ଗୁଳୁଚି, ଶୁଣ୍ଠି, ମୁଥା ଓ ଦୁରାଳଭା ସମାନ ଭାଗରେ ଆଣି ଯଥା ଯୋଗ୍ୟ ଜଳ ଦେଇ ସିଝାଇ ଏହି କ୍ୱାଥ ପାନ କଲେ ବାତଜ୍ୱର ଭଲ ହୁଏ ।

ବଚ, ମୁଆଣି, ଧନିଆଁ ଓ ଶୁଣ୍ଠି ଏସବୁର ଜଳବତ୍ କ୍ୱାଥ ସ୍ୱଳ୍ପରେ ଉଷ୍ଣ କରି ପାନ କଲେ ଜ୍ୱର ସମ୍ବନ୍ଧୀୟ ଅପକ୍ୱ ରସ ପରିପାକ ହେବା ସଙ୍ଗେ ସଙ୍ଗେ ବାତଜ୍ୱର ଓ ବାତ ରୋଗ ନିବାରିତ ହୁଏ ।

ଶାଳପର୍ଣ୍ଣୀ, ବାଈଅଁଳା, ରାସ୍ନା, ଗୁଳୁଚି ଓ ଅନନ୍ତ ମୂଳ ଏସବୁର କ୍ୱାଥ ଅଳ୍ପ ଉଷ୍ଣ କରି ପାନ କଲେ ଅତି ଶୀଘ୍ର ବାତଜ୍ୱର ନିବାରିତ-ହୁଏ ।

ବେଣା ମୂଳ, କୃଷ୍ଣପର୍ଣ୍ଣୀ, ଶୁଣ୍ଠି, ଚିରାଇତା, ମୁଥା, ଶାଳପର୍ଣ୍ଣୀ, ଲଠାବେଙ୍କୋଳି, ଅଙ୍କରାନ୍ତି, ଗୁଳୁଚି, ଗୋଖରି ଏ ସବୁର କ୍ୱାଥ (ଏକ-

Digitized by srujanika@gmail.com

ଚତୁର୍ଥାଂଶ ସିଦ୍ଧ ଜଳ) ବାତ ଜ୍ୱରାକ୍ରାନ୍ତ ରୋଗୀକୁ ଦେଲେ ରୋଗ ଶୀଘ୍ର ଆରୋଗ୍ୟ ହୁଏ ।

ଶୁଣ୍ଠି, ଗୁଳୁଚ, ପିପଳାମୂଳ, ଅଥବା ଧନିଆଁ, ଦେବଦାରୁ, କଣ୍ଟକାରୀ ଏହାର କ୍ୱାଥ ସେବନରେ ବାତଜ୍ୱର ଛାଡ଼ିଯାଏ ।



## ପିତ୍ତଜ୍ୱର ଚିକିତ୍ସା



ପିତ୍ତ ଜ୍ୱରାକ୍ରାନ୍ତ ରୋଗୀକୁ କୌଣସି ଉଷ୍ଣ କ୍ରିୟା କରିବ ନାହିଁ । ସର୍ବଦା ଶୀତଳ ଭବନରେ ରଖିବ । ଖେତପାପଡ଼ାର ରସ ଏକ ଛଟାଙ୍କି କାଷ୍ଠତ୍ ଚିନି ସଙ୍ଗ ସେବନ କଲେ ପିତ୍ତ ଜ୍ୱର ଆଶୁ ନିବାରିତ ହୁଏ । ଖେତପାପଡ଼ାର କ୍ୱାଥ ପାନ କଲେ ପିତ୍ତ ଜ୍ୱର ନିବାରିତ ହୁଏ ।

ଖେତପାପଡ଼ା, ରକ୍ତଚନ୍ଦନ, କୁଟୁବଲ, ଶୁଣ୍ଠି ଏସବୁର କ୍ୱାଥ ସେବନ କଲେ ପିତ୍ତଜ୍ୱର ନିବାରିତ ହୁଏ ।

ଲୋଧ, ନୀଳୋତ୍ପଳ, ଗୁଳୁଚ, ପଦ୍ମକାଠ ଓ ଅନନ୍ତ ମୂଳ ଏସବୁର କ୍ୱାଥରେ ଅର୍ଦ୍ଧ ତୋଲା ଇକ୍ଷୁ ଚିନି ମିଶାଇ ସେବନ କଲେ ପିତ୍ତଜ୍ୱର ଆରୋଗ୍ୟ ହୁଏ ।

ଇନ୍ଦ୍ରଯବ, କଟୁକୀ, ଯଷ୍ଟିମଧୁ ସମାନାଂଶରେ ମିଳିତ ୨ ତୋଲା, ଗୁଣ୍ଡଳଧୁଆ ଜଳ ଅର୍ଦ୍ଧ ସେର ଶେଷ ୵ ଦୁଇ ଅଣା ଓଜନ, ଏହି କ୍ୱାଥ ସେବନ କଲେ ପିତ୍ତଜ୍ୱର ଆରୋଗ୍ୟ ହୁଏ ଏବଂ ପିତ୍ତଜ୍ୱରର କୋଷ୍ଠବଦ୍ଧ ଥିଲେ ପରିଷ୍କାର ହୁଏ ।

ଗୁଳୁଚ, ଖେତପାପଡ଼ା ଓ ଅଁଳା ଏ ସବୁର କ୍ୱାଥ ପିତ୍ତଜ୍ୱର ନାଶକ ।

Digitized by srujanika@gmail.com

ଦୁରାଲଭା, ବାସଙ୍ଗ ଛାଲି, କ୍ଷେତପାପଡ଼ା, ପ୍ରିୟଙ୍ଗୁ, ନିମଛାଲି, କଟୁକୀ, ଗୁଳୁଚି ଏ ସବୁର କ୍ୱାଥ ଚିନି ସହିତ ସେବନ କଲେ ଦାହ୍ୟ ଓ ତୃଷ୍ଣାଯୁକ୍ତ ପିତ୍ତଜ୍ୱର ଛାଡ଼ିଯାଏ ।

## କଫଜ୍ୱର ଚିକିତ୍ସା

ନିମଛାଲି, ଶୁଣ୍ଠି, ଗୁଳୁଚି, ଦେବଦାରୁ, ଗଜଶୁଣ୍ଠି, ଚିରାଇତା, କୁଡ଼ି, ପିପ୍ପଳୀ, ଗଜପିପ୍ପଳୀ, କଣ୍ଟକାରୀ ଏ ସବୁର କ୍ୱାଥ ସେବନରେ କଫଜ୍ୱର ଆରୋଗ୍ୟ ହୁଏ ।

ଶୁଣ୍ଠି, ପିପଳୀ, ମରିଚ, ନାଗକେଶର, ହରିଦ୍ରା, କଟୁକୀ, ଇନ୍ଦ୍ର-ଯବ ଏସବୁର କ୍ୱାଥ ପାନ କଲେ କଫଜ୍ୱର ବିନଷ୍ଟ ହୁଏ ।

ଚିରାଇତା, ନିମଛାଲି, ପିପଳୀ, ଗଜ ଶୁଣ୍ଠି, ଶୁଣ୍ଠି, ଶତମୂଳୀ, ଗୁଳୁଚି, ବୃହତୀ ଏସବୁର କ୍ୱାଥ ସେବନରେ କଫଜ୍ୱର ଆରୋଗ୍ୟ ହୁଏ ।

ପିପଳୀ, ଶୁଣ୍ଠି ଓ ବଚ ଏସବୁର କ୍ୱାଥ, ସିଉଳି ଓଜନ ମହୁ ସହିତ ସେବନ କଲେ ଜ୍ୱର ଛାଡ଼ିଯାଏ ।

## ବାତ ପୈତ୍ତିକ ଜ୍ୱର ଚିକିତ୍ସା

ଗୁଳୁଚି, ନିମଛାଲି, ଧନିଆ, ପଦ୍ମକାଠ, ରକ୍ତ ଚନ୍ଦନ ଏସବୁର କ୍ୱାଥ ସେବନ କଲେ ଅଗ୍ନିର ଦୀପ୍ତି ହୁଏ ଓ ବାତ ପିତ୍ତଜ୍ୱର ଛାଡ଼ିଯାଏ ।

ମୁଥା, କ୍ଷେତପାପଡ଼ା, ମିଠାଲେମ୍ବୁ, ଚିରାଇତା, ବେଣାମୂଳ ରକ୍ତ-ଚନ୍ଦନ ଏସବୁର କ୍ୱାଥ ଚିନି ସହ ସେବନ କଲେ ବାତ ପୈତ୍ତିକ ଜ୍ୱର ବିନଷ୍ଟ ହୁଏ ।,

Digitized by srujanika@gmail.com

ଗୁଳୁଚି, କ୍ଷେତପାପଡ଼ା, ମୁଥା, ଚିରାଇତା, ଶୁଣ୍ଠି, ଏହି କ୍ୱାଥ ସେବନରେ ବାତପୈତ୍ତିକ ଜ୍ୱର ଆରୋଗ୍ୟ ହୁଏ ।

---

## ପିତ୍ତଶ୍ଳେଷ୍ମ ଜ୍ୱର ଚିକିତ୍ସା

ଗୁଳୁଚି, ନିମଛାଲି, ଧନିଆଁ, ରକ୍ତଚନ୍ଦନ, କଟୁକୀ, ଇନ୍ଦ୍ରଯବ ଏସବୁର କ୍ୱାଥରେ ପିପଳୀ ଚୂର୍ଣ୍ଣ ସିକିଏ ଓଜନ ପ୍ରକ୍ଷେପ କରି ପାନ କଲେ ପିତ୍ତଶ୍ଳେଷ୍ମଜ୍ୱର, ଅରୁଚି, ବାନ୍ତି, ପିପାସା, ଦାହ ବିନଷ୍ଟ ହୁଏ ଏବଂ ଏହି ପାଚନ ଆମଦୋଷ ନାଶ ଓ ଅଗ୍ନି ଦୀପ୍ତି କରେ ।

ମୁଥା, ଶୁଣ୍ଠି, ଗୁଳୁଚି, ଅଁଳା, ଅଙ୍କାନବନ୍ଧ, ବେଣାମୂଳ ଓ କୁଳୁତ୍ଥଳି ଏସବୁର କ୍ୱାଥ ସେବନରେ ପିତ୍ତଶ୍ଳେଷ୍ମ ଜ୍ୱର ଆରୋଗ୍ୟ ହୁଏ ।

## ବାତଶ୍ଳେଷ୍ମ ଜ୍ୱର ଚିକିତ୍ସା

ମୁଥା, ଶୁଣ୍ଠ, ଚିରାଇତା ପ୍ରତ୍ୟେକରୁ ଦୁଇ ତୋଳା, ସମଗ୍ର ଛଅ ତୋଳା ଦେଢ଼ ସେର ଜଳରେ ପାଚନ ସିଝାଇ, ଦେଢପା ଜଳ ଥିବ ଓହ୍ଲାଇବ । ଏହା ଭଲ ଭାବରେ ଛାଣି ପିଇବା ଦ୍ୱାରା ବାତ ଶ୍ଳେଷ୍ମାଜ୍ୱର ଆରୋଗ୍ୟ ଓ ଆମଦୋଷ ବ, ନାଶ ହୁଏ ।

ମୁଥା, ଗୁଳୁଚି, ଶୁଣ୍ଠି, ଦାରୁଙ୍ଗ, କୁଳୁତ୍ଥଳି, କ୍ଷେତପାପଡ଼ା, ହରଡକୀ, କଣ୍ଟାକାରୀ ଓ ମୁସଲୀ ଏସବୁର କ୍ୱାଥ ବାତଶ୍ଳେଷ୍ମା ଜ୍ୱରର ପଥ୍ୟ ।

Digitized by srujanika@gmail.com

ମୁଥା, ଖେତପାପଡ଼ା, ଶୁଣ୍ଠି, ଗୁଳୁଚି, ଦୁରାଲଭା ଏସବୁର କ୍ୱାଥ ସେବନରେ ବାତଶ୍ଳେଷ୍ମା ଜ୍ୱର, ଭ୍ରାନ୍ତି, ଦାହ, ଶ୍ଳେଷ୍ମାଯୁକ୍ତ ଜ୍ୱର ଆରୋଗ୍ୟ ହୁଏ ।



## ସନ୍ନିପାତ ଜ୍ୱର ଚିକିତ୍ସା



କଠ ଫଳ, କୁଡ଼, କକଡ଼ାଶୃଙ୍ଗୀ, ଶୁଣ୍ଠି, ପିପଳୀ, ମରିଚ, ଦୁରାଲଭା ଓ କୃଷ୍ଣ ଜୀରା ଏସବୁର ଚୂର୍ଣ୍ଣ ସମଭାଗରେ ଆଣି ତହିଁରୁ ଏକଅଣା ଓଜନ ପରିମାଣରେ ଦିବସରେ ୨।୩ ବାର ମଧୁ ସହିତ ଲେହନ କଲେ ଘୋରତର ସନ୍ନିପାତ ହିକ୍କା, ଶ୍ୱାସ, କାସ ଓ କଣ୍ଠ ରୋଗ ନିବାରିତ ହୁଏ । ବିଶେଷରେ ଏହା ଊର୍ଦ୍ଧ୍ୱ ଶ୍ଳେଷ୍ମା ହରଣ କରିଥାଏ । କେହି କେହି ଅଦା ରସରେ ପ୍ରୟୋଗ କରିଥାନ୍ତି ।

ବିଡ଼ଙ୍ଗ ଏକ ତୋଳା ଏକ ପା ଜଳରେ ସିଦ୍ଧ କରି ଏକ ଛଟାଙ୍କି ଥିବ ଓହ୍ଲାଇ, ଅଳ୍ପ ଅଳ୍ପ ତାହା ପାନ କରାଇବା ଦ୍ୱାରା ରୋଗୀର ସନ୍ନିପାତ ଜ୍ୱରର କୃମି ଜନିତ ପେଟ ଫୁଲା ଆରୋଗ୍ୟ ହୁଏ ଏବଂ କୃମି ଜନିତ ସକଳ ପ୍ରକାର ରୋଗ ଆରୋଗ୍ୟ ହୁଏ । ତ୍ରିକଟୁ, ତ୍ରିଫଳା, ମୁଥା, କଟୁକୀ, ଇନ୍ଦ୍ରଯବ, ବାସଙ୍ଗ ଓ ହରିଦ୍ରା ଏସବୁର କ୍ୱାଥ ସେବନରେ କଣ୍ଠ କୁବ୍ଜ, ସାନ୍ନିପାତିକ ଜ୍ୱର ଆରୋଗ୍ୟ ହୁଏ ।

ସନ୍ନିପାତ ରୋଗୀର କର୍ଣ୍ଣ ମୂଳ ଶୋଥରେ ଅହିଫେନ, ମୁସମ୍ବର, ସଜନାଛାଲି ସମପରିମାଣରେ ଅଦା ରସରେ ବାଟି ଗରମ କରି ପ୍ରଲେପ ଦେବ ।

Digitized by srujanika@gmail.com

## ବିଷମ ଜ୍ୱର ଚିକିତ୍ସା



କଣ୍ଟକାରୀ, ଶୁଣ୍ଠି ଓ ଗୁଳୁଚ ଏସବୁର କ୍ୱାଥରେ ପିପଳୀ ଚୂର୍ଣ୍ଣ (୧ ଅଣା ଓଜନର) ପ୍ରକ୍ଷେପ ଦେଇ ପାନ କଲେ ଜୀର୍ଣ୍ଣ ଜ୍ୱର, ଅରୁଚ, କାଶ, ଶୂଳ, ଶ୍ୱାସ, ଅଗ୍ନିମାନ୍ଦ୍ୟ ଇତ୍ୟାଦ ରୋଗ ବନଷ୍ଟ ହୁଏ । ଏହାପରୁ ପ୍ରତ୍ୟହ ସାୟଂକାଳରେ ସେବନ କରିବା କର୍ତ୍ତବ୍ୟ ।

ଗୁଳୁଚ କ୍ୱାଥରେ ଏକ ଅଣା ଓଜନର ପିପଳୀ ଚୂର୍ଣ୍ଣ ଓ ମଧୁ ୧୦।୧୨ ଠୋପା ପ୍ରକ୍ଷେପ ଦେଇ ପାନ କଲେ ଜୀର୍ଣ୍ଣ ଜ୍ୱର ଓ କଫ ନଷ୍ଟ ହୁଏ ।

ପିପଳୀ ଚୂର୍ଣ୍ଣ ଯେତେ ତାର ଦ୍ୱିଗୁଣ ଗୁଡ଼ ମିଳତ କର ସେବନ କରବ । ଏହା ଜୀର୍ଣ୍ଣ ଜ୍ୱର ଓ ମନ୍ଦାଗ୍ନି ନାଶକ ।



## ପୁରାତନ ବିଷମ ଜ୍ୱର ଚିକିତ୍ସା



ଗୁଳୁଚ, ଖେତପାପଡ଼ା, ବଲ୍ୱପତ୍ର ଓ ଶେଫାଳିକା ପତ୍ର ଏସବୁର କ୍ୱାଥ ପାନ କଲେ ବଷମ ଜ୍ୱର ନଷ୍ଟହୁଏ ।

ପଟୋଳ ପତ୍ର ରସ ଦୁଇ ତୋଳାରେ କିଛିତୁ ମଧୁ ମିଶାଇ ସେବନ କଲେ ବଷମ ଜ୍ୱର ପ୍ରଶାନ୍ତ ହୁଏ ।

ପିପଳୀ ଓ ହରିତକୀ ସମଭାଗରେ ଦୁଇ ଅଣା ଓଜନ ଚୂର୍ଣ୍ଣରେ କିଛିକ ଓଜନ ଗୁଡ଼ ମିଶାଇ ସେବନ କଲେ ସର୍ବପ୍ରକାର ପୁରାତନ ବଷମଜ୍ୱର ନଷ୍ଟ ହୁଏ ।

ଖେତପାପଡ଼ାର ରସ ଦୁଇ ତୋଳା ପ୍ରାତଃକାଳରେ ଏବଂ ସନ୍ଧ୍ୟାରେ ୧୦।୧୨ ଠୋପା ମଧୁ ସହିତ ସେବନ କଲେ ବଷମ ଜ୍ୱର, ଦାହ, ପିପାସାଦ ଉପଶମ ହୋଇଥାଏ ।

Digitized by srujanika@gmail.com

ଗୁଳୁଚ, ଘେତପାପଡ଼ା, ଲମଛଲ, ଧନିଆଁ, ରକ୍ତଚନ୍ଦନ, କଟକୀ ଓ ଜଙ୍ଗି ହରଡ଼ା ଏସବୁର କ୍ୱାଥ ତିନି ସପ୍ତାହ ପର୍ଯ୍ୟନ୍ତ ସେବନ କଲେ ପ୍ଲିହାଯୁକ୍ତ ଜ୍ୱର ଆରୋଗ୍ୟ ହୁଏ ।

ଶିଉଲୀପତ୍ର, ଗୁଳୁଚ, ଘେତପାପଡ଼ା, ଗୋଲାପଫୁଲ ଏସବୁର କ୍ୱାଥ କିଛି ଦିନ ସେବନ କଲେ ସକଳ ପ୍ରକାର ବିଷମ ଜ୍ୱର ଦୂର ହୋଇଥାଏ ।

ଶୁଣ୍ଠି ଓ ଅମଳାକୀର କ୍ୱାଥ କର୍ପୂର ଚିନି ସହଯୋଗରେ ପାନ କଲେ ତୃଷ୍ଣା, ଦାହ ଓ ନିଦ୍ରାର ଅଭାବ ଦୂର ହୁଏ । ଏହା ସର୍ବବିଧ ଜ୍ୱର ନାଶକ ।

---

## ମେଲେରିଆ ଜ୍ୱର ଚିକିତ୍ସା



ଅନନ୍ତମୂଳ, ଯଷ୍ଟିମଧୁ, ଜଙ୍ଗି ହରଡ଼ା ଓ ପିପଳୀ ଏ ସବୁର ଚୂର୍ଣ୍ଣ ସମଭାଗରେ ଏକ ତୋଳା ଆଣି, ଅଁଳା କ୍ୱାଥରେ ବତୁରାଇ ରୌଦ୍ର ତାପରେ ଶୁଖାଇବ । ତାପରେ ଏକ ଅଣା ଓଜନରେ ବଟିକା ଗୁଡ଼ିଏ ପ୍ରସ୍ତୁତ କରି ପ୍ରାତଃକାଳ, ଅପରାହ୍ନ, ଓ ରାତ୍ରରେ ଗୋଟିଏ ଗୋଟିଏ ବଟିକା ଶିମିଳି ପତ୍ର ରସ ଓ ମଧୁ ସହିତ ସେବନ କଲେ ମେଲେରିଆ ଜ୍ୱର ଛାଡ଼ି ଯାଏ । ଶିମୁଳି ପତ୍ର, ବେଲପତ୍ର, ଗୁଳୁଚ, ଘେତପାପଡ଼ା ଏସବୁର ରସ ଏକ ଛଟାଙ୍କି ପରିମାଣ କର୍ପୂର ସୈନ୍ଧବ ସହଯୋଗରେ ପାନ କଲେ ମେଲେରିଆ ରୋଗ ଛାଡ଼ିଯାଏ ।

ତୁଳସୀପତ୍ର ରସ ଏକ ତୋଳା ଓ ବେଲପତ୍ରର ରସ ଏକତୋଳା ଏକତ୍ର କରି ତହିଁରେ ଅଳ୍ପ ମହୁ ମିଶାଇ ଏକ ଛଟାଙ୍କି ହିସାବରେ ପାନ କଲେ ମେଲେରିୟା ଜ୍ୱର ତଜ୍ଜନିତ ଶରୀରର ବେଦନା, ପିପାସା, ଶୀତ ଓ କମ୍ପ ଉପଶମ ହୁଏ ।

Digitized by srujanika@gmail.com

ପାଳଜ୍ୱର—କୃଷ୍ଣ ତୁଳସୀର ପତ୍ର ତରିଶି ଗୋଟି, ପୁରାତନ ଗୁଡ଼ ସହ ମର୍ଦ୍ଦନ କରି ଏହାର ତିନ ଗୋଟି ବଟିକା କରିବ । ଜ୍ୱର ଆସିବା ଦୁଇ ଘଣ୍ଟା ପୂର୍ବେ ଅଧ ଘଣ୍ଟା ଉପାନ୍ତରେ ତିନୋଟି ବଟିକା ସେବନ କରିବ । ସର୍ବବିଧ ପାଳଜ୍ୱର ଏହା ଦ୍ୱାରା ଉପଶମ ହୁଏ ।

ଅଦାରସ, ବାସଙ୍ଗ ରସ ମଧୁ ସହ. ତିନ ଦିବସ ସେବନ କଲେ ଐକାହ୍ନିକ ଜ୍ୱର ଭଲ ହୁଏ । କୃଷ୍ଣବର୍ଣ୍ଣ ବସ୍ତ୍ର ଦ୍ୱାରା ରୋଗୀକୁ ଆବୃତ କରି ଗୁଗୁଲ ଓ ପେଚକର ପୁଚ୍ଛ ଭସ୍ମର ଧୂମ ପ୍ରଦାନ କଲେ ଚାତୁର୍ଥିକ ଜ୍ୱର ଭଲ ହୁଏ ।



## ଜ୍ୱରାତିସାର ଚିକିତ୍ସା

ବେଲଶୁଣ୍ଠା, କୁରୁବଲି, ଶତ୍ୱଇଡା, ଗୁଳୁଚ, ମୁଥା ଏବଂ ଇନ୍ଦ୍ରଯବ ଏସବୁର କ୍ୱାଥ ପ୍ରାତଃକାଳରେ ପାନ କରିବ । ଏହା ଜ୍ୱରାତିସାର ନାଶକ । ଶୁଣ୍ଠି, ମୁଥା ଓ ଇନ୍ଦ୍ରଯବ ଏସବୁର କ୍ୱାଥ ପ୍ରାତଃକାଳରେ ପାନ କଲେ ଜ୍ୱରାତିସାର ନିବାରିତ ହୁଏ ।

ବେଲଶୁଣ୍ଠା, ପୁରାତନ ଗୁଡ଼, ଲୋଧ ସମଭାଗରେ ଏକତ୍ରେ ବାଟି ଦୁଇ ଅଣା ଓଜନ ମାତ୍ରା ମଧୁସହ ଲେହନ କଲେ ଜ୍ୱରାତିସାରଗ୍ରସ୍ତ ରୋଗୀର ରକ୍ତପତନ, ଉଦର ଯନ୍ତ୍ରଣା ଇତ୍ୟାଦି ଭଲ ହୁଏ ।



## ଅତିସାର ଚିକିତ୍ସା

ମୁଥା ଦଶ ଗୋଟି, ଛାଗ-ଦୁଗ୍ଧ ଦେଢ଼ ଛଟାଙ୍କି ଓ ଜଳ ତିନ ଛଟାଙ୍କି ସହିତ ସିଦ୍ଧ କରି ୩ ଛଟାଙ୍କି ଅବଶିଷ୍ଟ ଥିବ ଓହ୍ଲାଇ ଅତିସାର ରୋଗୀକୁ ପଥ୍ୟ ଦେବ । ଏତଦ୍ୱାରା ପେଟର ପରିପାକ କରେ ।

Digitized by srujanika@gmail.com

ଧନିଆଁ, କୁରୁବଲ, ବେଲଶୁଣ୍ଠା, ମୁଥା ଓ ଶୁଣ୍ଠି ଏସବୁର କ୍ୱାଥ ଆମଶୂଳ ନାଶକ, ପାଚକ ଓ ଅଗ୍ନିବଳ ବର୍ଦ୍ଧକ ।

ନୀଳୋତ୍ପଳ, ଧାତୁକି ଫୁଲ, ଡାଳିମ୍ବର ଖୋସା ଓ ଶୁଣ୍ଠି ଏହି ସବୁର ଚୂର୍ଣ୍ଣ ସମ ଭାଗରେ ଗ୍ରହଣ କରି, ପ୍ରାତଃକାଳରେ ଏକଅଣା ଓଜନର ଓ ସନ୍ଧ୍ୟାରେ ଏକଅଣା ଓଜନର ମାତ୍ରା ଗୁଡ଼ଳ ଧୁଆ ଜଳ ଓ ମଧୁ ସହିତ ସେବନ କଲେ ପିତ୍ତାତିସାର ନଷ୍ଟ ହୁଏ ।

ଇନ୍ଦ୍ରଯବର କ୍ୱାଥ ସେବନରେ ପିତ୍ତାତିସାର ଦୂର ହୁଏ । ତାଳ-ମୂଳ, ମଧୁ କିମ୍ବା ନାରିକେଳ ଜଳ ସହିତ ସେବନ କଲେ ରକ୍ତାତିସାର ନଷ୍ଟ ହୁଏ ।

ଜାମ୍ବୁ, ଆମ୍ବ, ଅଁଳା, ଏସବୁର କଅଁଳ ପତ୍ର କୁଟି ରସ ବାହାର କରି ସମ ପରିମାଣ ଛାଗ ଦୁଗ୍ଧରେ ମିଶାଇ ପରେ ମଧୁ ପ୍ରକ୍ଷେପ କରି ପାନ କଲେ ରକ୍ତାତିସାର ନଷ୍ଟ ହୁଏ ।

---

## ଅମାଶୟ ଚିକିତ୍ସା



ଭଜା ଜିରା ଚୂର୍ଣ୍ଣ ୪ । ୫ ରତି, ମଧୁ ୭ । ୮ ଟୋପା ସହିତ ପ୍ରାତଃକାଳ, ଅପରାହ୍ନ ଓ ସନ୍ଧ୍ୟାରେ ତିନିବାର ସେବନ କଲେ ଆମ ଦୋଷର ନିବୃତ୍ତି ହୁଏ ଓ ବାହ୍ୟର ସ୍ୱାଭାବିକାବସ୍ଥା ଜନ୍ମିବା ସଙ୍ଗେ ସଙ୍ଗେ କ୍ଷୁଧା ବୃଦ୍ଧି ହୋଇଥାଏ ।

ମୁଥାର ରସ ଏକ ଛଟାଙ୍କି କିଞ୍ଚିତ୍ ମଧୁ ସହିତ ପାନ କଲେ ସର୍ବ-ବିଧ ଅମାଶୟ ଉପଶମ ହୁଏ ।

ଡାଳିମ୍ବର ଜଠା ବା ଅଗି, ଜାମ ପତ୍ର ରସ ଓ ଛାଗ ଦୁଗ୍ଧ ଏକତ୍ର ବାଟି ଖାଇଲେ ବହୁ ଦିବସର ଆମ ରକ୍ତ ଦୁଇ ଦିନରେ ଅପସରି ଯାଏ ।

Digitized by srujanika@gmail.com

ରକ୍ତ ମନ୍ଦାର ଦୁଇଟି ଏକ ଛଟାଙ୍କି ଚିନି ସହିତ ବାଟି ଖାଇଲେ ଶ୍ୱେତ ଅମାଶୟ ପ୍ରଶମିତ ହୁଏ । କଞ୍ଚା ଅମ୍ବ ଲବଣ ସଂଯୁକ୍ତକରି ଖାଇଲେ ବା ପୁରାତନ ତେନ୍ତୁଳି ଏକ ଛଟାଙ୍କି ଏକ ପା ଜଳରେ ବତୁରାଇ ସେହି ଜଳ ଲବଣ ସଂଯୁକ୍ତ କରି ପାନ କଲେ ଅମାଶୟ ପ୍ରଶମିତ ହୁଏ ।

---

## ଗ୍ରହଣୀ ରୋଗ ଚିକିତ୍ସା



ହିଙ୍ଗୁ, ଜୀରା, ସୈନ୍ଧବ, ଘୋଳ (ଦହି) ସହିତ ମିଶାଇ (ଭଲ ଭାବରେ ଫେଣି ଦେବ) ସେବନ କରିବ । ଗ୍ରହଣୀ ପୀଡ଼ାର ଏହା ମହୋପକାରୀ ମହୌଷଧ । ରୋଗ ଦୂର ହେବା ସଙ୍ଗେ ସଙ୍ଗେ ଏଥି ଦ୍ୱାରା ଆହାରରେ ରୁଚି, ଶରୀର ପୁଷ୍ଟି ଓ ଦେହରେ ବଳ ସଞ୍ଚାର ହୋଇଥାଏ ।

ବାୟୁ ପ୍ରକୁପିତ ଗ୍ରହଣୀ ରୋଗରେ ଜାଙ୍ଗି ହରିଡ଼ା ଘିଅରେ ଭାଜି ତାହାର ଚୂର୍ଣ୍ଣ ଶିଙ୍ଗିଡ଼ିକ ଓଜନ, ମିଶ୍ରି ସମପରିମାଣରେ ମିଶାଇ କଞ୍ଚିହି ଘୋଳ ସହିତ ପାନ କଲେ ବହୁ କାଳର ଗ୍ରହଣୀ ରୋଗ ଉପଶମ ହୁଏ ।

ଧନିଆଁ, ଶୁଣ୍ଠି, ମୁଥା, ଯୁଆଣି କୁରୁବଳୀ ଓ ଇନ୍ଦ୍ରଯବ ଏସବୁ ଦ୍ରବ୍ୟ ସମଭାଗରେ (ମୋଟ ଦୁଇ ତୋଳା ପରିମାଣ) ଅଧ ସେର ଜଳରେ ପାକ କରି ଅଧ ପା ଅବଶିଷ୍ଟ ଥିବ ଓହ୍ଲାଇ ପ୍ରାତଃକାଳରେ ସେବନ କଲେ ଗ୍ରହଣୀ ରୋଗ ଛାଡ଼ିଯାଏ ।

ଗ୍ରହଣୀ ରୋଗୀର ଗଳା ଜ୍ୱାଳା, ବୁକ ଜ୍ୱାଳା, ପେଟ ବେଦନା ଏବଂ କୋଷ୍ଠବଦ୍ଧ ଥିଲେ ହରିଡ଼ା, ଯୁଆଣି, ପାନମହୁରି, ବିଟଲବଣ ପ୍ରତ୍ୟେକ ଏକ ଅଣା ଓଜନ ଏକତ୍ର କରି ଗରମ ଜଳରେ ଗୋଳି ରୋଗୀକୁ ପିଇବାକୁ ଦେବ । ଏଥିଦ୍ୱାରା ବହୁ ଉପକାର ହୁଏ ।

---

Digitized by srujanika@gmail.com

## ଅର୍ଶରୋଗ-ଚିକିତ୍ସା



ଅର୍ଶ ରୋଗୀର ରକ୍ତ ପଡନାବସ୍ଥାରେ ପ୍ରତ୍ୟହ ପ୍ରାତଃକାଳରେ ଦୁଵାର ରସ ଏକ ଛଟାଙ୍କି ଅଳ୍ପ ମିଶ୍ରି ଚୂର୍ଣ୍ଣ ସହିତ ସେବନ କଲେ ରକ୍ତ ପଡ଼ିବା ପୁଣି ଯନ୍ତ୍ରଣାଦି ମଧ୍ୟ ଉପଶମିତ ହୁଏ ।

କୃଷ୍ଣ ତିଳ ବଟା ଦୁଇ ତୋଳା ପରିମାଣ ଜଳ ସହିତ ମିଶାଇ ସପ୍ତାହ କାଳ ସେବନରେ ଅର୍ଶ ରୋଗ ନାଶ ହୋଇଥାଏ ।

ରକ୍ତଚନ୍ଦନ, ଚିରାଇତା, ଦୁରାଳଭା, ମୁଥା, ଦାରୁ, ହଳଦ, ଡ଼ାଲ-ଚିନି, ବେଣାମୂଳ, କାମଛାଲି ଏସବୁର କ୍ୱାଥ ପାନ କଲେ ରକ୍ତାର୍ଶ ନିବାରଣ ହୁଏ ।

ନାଗେଶ୍ୱର ଫୁଲର ରେଣୁ ଏକ ଅଣା ଓଜନ, ଚିନି ଅର୍ଦ୍ଧ ତୋଳା, ଏକତ୍ର ସେବନ କଲେ ଅର୍ଶ ପୀଡ଼ା ସମ୍ପୂର୍ଣ୍ଣ ଆରୋଗ୍ୟ ହୁଏ ।

ପଦ୍ମକେଶର, ମଧୁ, ଲହୁଣି, ଚିନି, ନାଗକେଶରେ ଏକତ୍ର ମିଶାଇ ଲେହନ କଲେ ରକ୍ତାର୍ଶ ନିବୃତ୍ତି ହୁଏ ।

ବଳ, ବର୍ଣ୍ଣ ଓ ଅଗ୍ନି ବୃଦ୍ଧି ପାଇଁ ଅର୍ଶରୋଗୀ ସର୍ବଦା ତକ୍ର (ଘୋଳ ଦହି) ସେବନ କରିବାକୁ ହେବ । ଅର୍ଶ ରୋଗୀର କୋଷ୍ଠ କାଠିନ୍ୟତା ହେଲେ ହରିଡ଼ା ଦୁଇ ତୋଳା, ଇକ୍ଷୁଗୁଡ଼ ଅର୍ଦ୍ଧ ତୋଳା ଏକତ୍ର ବାଟି ସେବନ କରିବାକୁ ହେବ ।

ବିଟ ଲବଣ ଶିଉକି ଓଜନ, ଜଙ୍ଗି ହରିଡ଼ା ଏକ ତୋଳା, ରାତ୍ର ନିଦ୍ରା ଯିବା ସମୟରେ ସେବନ କଲେ ଅର୍ଶ ରୋଗୀର କୋଷ୍ଠ ସରଳ ହୁଏ ।

ପିପଳି ଓ ହଳଦ ଗୋ-ମୂତ୍ରରେ ବାଟି ଗୁହ୍ୟ ଦ୍ୱାରରେ ପ୍ରଲେପ ଦେଲେ ଅର୍ଶ ପୀଡ଼ା ଆରୋଗ୍ୟ ହୁଏ ।

-o-

Digitized by srujanika@gmail.com

## ଅଗ୍ନିମାନ୍ଦ୍ୟ ଓ ଅଜୀର୍ଣ୍ଣ ଚିକିତ୍ସା



ଧନିଆଁ ଓ ଶୁଣ୍ଠି ଏହାର କ୍ୱାଥ ସେବନ କଲେ ଅଜୀର୍ଣ୍ଣ ପ୍ରଶମିତ ହୁଏ ।

ଯଦି ପ୍ରାତଃ ସମୟରେ ଅଜୀର୍ଣ୍ଣ ବୋଧ ହୁଏ, ତାହାହେଲେ ହରିଡ଼ା, ଶୁଣ୍ଠି ଓ ସୈନ୍ଧବ ଲବଣ ଚୂର୍ଣ୍ଣ କରି ଶୀତଲ ଜଳ ସହିତ ସେବନ କରି ଯଥା ସମୟରେ ଆହାର କଲେ କୌଣସି ଅନିଷ୍ଟ ଆଶଙ୍କା ରହେ ନାହିଁ ।

ତ୍ରିଫଳା ଚୂର୍ଣ୍ଣ, ସୈନ୍ଧବ ଲବଣସହ ସେବନ କଲେ ଅଜୀର୍ଣ୍ଣ ଉପଶମ ହୁଏ ।

ଅଦା କଞ୍ଚିତ୍ ଲବଣ ସହିତ ଆହାର ପୂର୍ବେ ସେବନ କଲେ କ୍ଷୁଧା ବୃଦ୍ଧି ହୁଏ ଓ ମନ୍ଦାଗ୍ନି ତିରୋହିତ ହୁଏ । ପୁରାତନ ଘୃତ ଗରମ କରି ନାଭି ମୂଳରେ ଅଳ୍ପେ ଅଳ୍ପେ ମାଲିସ କଲେ କୋଷ୍ଠ ପରିଷ୍କାର ହୁଏ, ଉଦରାଧ୍ମାନ ରହେ ନାହିଁ ।

ହିଙ୍ଗୁ ଓ ସୈନ୍ଧବ ଲବଣ ସମପରିମାଣରେ ମିଶାଇ ଏକ ଅଣା ଓଜନ ଆହାର୍ଯ୍ୟ ଦ୍ରବ୍ୟ ସହିତ ସେବନ କଲେ ପରିପାକ ବୃଦ୍ଧି ହୁଏ ।

ଶୁଣ୍ଠି, ମରିଚ, ପିପଳୀ, ଯୁଆଣି, ସୈନ୍ଧବ, ଜୀରା, ହିଙ୍ଗୁ ଏସମସ୍ତ ଚୂର୍ଣ୍ଣ କରି ପ୍ରାତଃକାଳରେ ଦୁଇ ଅଣା ଓଜନ ଜଳ ସହିତ ମିଶାଇ ଅଗ୍ନି ବଳ ବୃଦ୍ଧି ସକାଶେ ସେବନ କରିବ ।

---

## ବିସୂଚିକା ଚିକିତ୍ସା



ବେଲଶୁଣ୍ଠା, ଶୁଣ୍ଠି, କଇଁଫଳ ଏସବୁର କ୍ୱାଥ ସେବନ କଲେ ବିସୂଚିକା ରୋଗ ଦୂର ହୁଏ । ଘୂର୍ଣ୍ଣି ବାନ୍ତି, ପିପାସା, ଶୂଳ, ହସ୍ତ ପଦ

Digitized by srujanika@gmail.com

ଖଲ ମାରିବା, ଦାହ, ହାଇ, ଶରୀରର ବିବର୍ଣ୍ଣତା ଏସବୁ ବାଧା ଦୂର ହୋଇଯାଏ ।

ବିସୂଚିକା ଅତ୍ୟନ୍ତ ବୃଦ୍ଧି ହେଲେ ପ୍ରାଣରକ୍ଷା ନିମିତ୍ତ ଉକ୍ତ କ୍ବାଥ ସମଜଳ ଦଧି ଅଥବା ନାରିକେଳ ଜଳ ପ୍ରୟୋଗ କରିବ ।

ଯବଚୂର୍ଣ୍ଣ ଓ ଯବକ୍ଷାର ତକ୍ର ଦ୍ୱାରା ମର୍ଦ୍ଦନ ଓ ଉଷ୍ଣ କରି ପେଟରେ ଲେପ ଦେଲେ ବିସୂଚିକା ନାଶ ହୁଏ ।

---

## କ୍ରିମି ରୋଗ ଚିକିତ୍ସା



ଲିମପତ୍ର ରସରେ ମଧୁ ମିଶାଇ ପାନ କଲେ କ୍ରିମି ନଷ୍ଟ ହୁଏ ।

ପଲାଶ ବୀଜ ଏକ ତୋଳା, ଏକ ପା ଜଳରେ ସିଦ୍ଧ କରି ଏକ ଛଟାଙ୍କି ଅବଶିଷ୍ଟ ଥିବ ଓହ୍ଲାଇ ତହିଁରେ କିଞ୍ଚିତ୍ ମହୁ ମିଶାଇ ପାନ କଲେ କ୍ରିମି କୀଟ ବିନଷ୍ଟ ହୁଏ ।

ପଲାଶ ବୀଜ ଦୁଇଅଣା ଓଜନ କିଞ୍ଚିତ୍ ମହୁସହ ଲେହନ କଲେ ସପ୍ତାହ ମଧ୍ୟରେ କ୍ରିମି ବହିର୍ଗତ ହୋଇ ଦେହ ସୁସ୍ଥ ହୋଇଯାଏ ।

---

## ପାଣ୍ଡୁ ରୋଗ ଚିକିତ୍ସା



ହରିଡ଼ା, ଅଁଳା, ବାହାଡ଼ା, ଗୁଳୁଚି, ବାସଙ୍ଗ ଛାଲି,କଟୁକୀ, ଚିରାଇତା, ଲିମଛାଲି ଏସବୁର କ୍ବାଥ ସେବନ କଲେ ଅରୁଚି, ପିପାସା, ଗାତ୍ର ଦାହ, ହସ୍ତପଦ ଶୋଥ, ମୃଦୁ ମୃଦୁ ଜ୍ୱର, ମୁଖ, ଚକ୍ଷୁ ଓ ଶରୀରର ବିବର୍ଣ୍ଣତା ଏବଂ ପ୍ରସ୍ରାବର ପୀତବର୍ଣ୍ଣତା ଇତ୍ୟାଦି ଉପସର୍ଗ ଶୀଘ୍ର ବିଦୂରିତ ହୁଏ ।

ଅଁଳାଚୂର୍ଣ୍ଣ ଏକ ଅଣା, ବାହାଡ଼ା ଚୂର୍ଣ୍ଣ ଏକ ଅଣା, ଜଷ୍ଟିମଧୁ ଏକ ଅଣା, ହରିଡ଼ା ଚୂର୍ଣ୍ଣ ଏକ ଅଣା (ଓଜନ) ଅନନ୍ତମୂଳ କ୍ବାଥ

Digitized by srujanika@gmail.com

ସହ ସେବନ କଲେ ପାଣ୍ଡୁ, କାମଳ ରୋଗ ନଷ୍ଟ ହୁଏ । ଏହା ଅଗ୍ନି-ଦୀପକ ଓ ବଳକାରକ ।

ଗୁଳୁଚ କ୍ୱାଥରେ ବଡ଼ଙ୍ଗ ଚୂର୍ଣ୍ଣ ତିନ ରତି, ଦାରୁହଳଦ ଚୂର୍ଣ୍ଣ ୩ ରତି ମିଶାଇ ପ୍ରାତଃକାଳରେ ସେବନ କରିବ । ଏହା ମଧ୍ୟ ଉପରୋକ୍ତ ରୋଗର ନାଶ ।



## ବିବିଧ ରୋଗ ଚିକିତ୍ସା

କୁରୁବଲ, ନୀଳୋତ୍ପଳ, ଧନିଆଁ, ରକ୍ତଚନ୍ଦନ, ଯଷ୍ଟିମଧୁ, ଗୁଳୁଚ, ବେଣାମୂଳ ଏବଂ ତହୁଡ଼ ଏସବୁର କ୍ୱାଥରେ ମଧୁ ଓ ଚିନି ପ୍ରକ୍ଷେପ କରି ପାନ କଲେ ରକ୍ତ ପିତ୍ତ, ପିପାସା, ଦାହ ଓ ଜ୍ୱର ନଷ୍ଟ ହୁଏ ।

ଛାଗ ମାଂସ ଭକ୍ଷଣ, ଶୁଣ୍ଠି ଚୂର୍ଣ୍ଣ ସଂଯୁକ୍ତ ଛାଗ ଦୁଗ୍ଧ ଓ ଛାଗ ଘୃତ ପାନ, ଛାଗଳସହ କ୍ରୀଡ଼ା ଏବଂ ଛାଗ ବେଷ୍ଟିତ ସ୍ଥାନରେ ଶୟନ କଲେ ଯକ୍ଷ୍ମାରୋଗ ନଷ୍ଟ ହୁଏ ।

ତ୍ରିକଟୁ ଚୂର୍ଣ୍ଣ କରି ସମ ପରିମାଣରେ ଦୁଇ ଅଣା (ଓଜନ) ହିସାବରେ ମଧୁ ସହିତ ପ୍ରାତଃ ଓ ସନ୍ଧ୍ୟାରେ ଲେହନ କଲେ ଯକ୍ଷ୍ମା କାସ ଭଲ ହୁଏ ।

ଯକ୍ଷ୍ମା ରୋଗୀର ଜ୍ୱର ନାଶ ସକାଶେ (ଜ୍ୱର ଥିଲେ) ଗୁଳୁଚ, କ୍ଷେତପାପଡ଼ା, ଶୁଣ୍ଠି, ପଟୋଳପତ୍ର, ବେଲଗୁଳି ଏସବୁର କ୍ୱାଥ ପିଇବା ସକାଶେ ଦେବ ।

ଯକ୍ଷ୍ମା ରୋଗୀର ଫୁସ୍ ଫୁସ୍‌ରେ କ୍ଷତ ହୋଇ କାସ ସହିତ ରକ୍ତ ପଡ଼ୁଥିଲେ ଯଜ୍ଞଡ଼ିମିରି ରସ ଦୁଇ ତୋଳା କିମ୍ବା ମଧୁ ସହିତ ସେବନ କରାଇଲେ ଉପଶମ ହୁଏ ।

Digitized by srujanika@gmail.com

ମରିଚ ଦୁଇତୋଳା, ପିପଳି ଦୁଇ ତୋଳା, ଡ଼ାଳିମ୍ବ ଫଳର ଚୋପା ଆଠ ତୋଳା, ଗୁଡ଼ ଷୋଳ ତୋଳା ଏବଂ ଯବକ୍ଷାର ଏକ ତୋଳା ଏସବୁ ମୋଦକ କରି ଏକ ସିକି ଓଜନର ମାତ୍ରା କିଛି ଦିନ ସେବନ କଲେ ସର୍ବପ୍ରକାର ଅସାଧ୍ୟ କାସ ନଷ୍ଟ ହୁଏ ।

ଅର୍ଜ୍ଜୁନ ବୃକ୍ଷର ଛାଲର ଚୂର୍ଣ୍ଣ, ବାସଙ୍ଗ ପତ୍ର ଦ୍ଵାରା ସାତ ଥର ଭାବନା ଦେଇ ଏହା ୧ ତୋଳା ପରିମାଣ (ଓଜନ) ମଧୁ ସହିତ ଲେହନ କଲେ ରକ୍ତୋଦ୍‌ଗୀରଣ କ୍ଷୟ ଯୁକ୍ତ ସର୍ବବଧ କାସ ରୋଗ ଧ୍ୱଂସ ହୁଏ । ପ୍ରତିଦିନ ଦୁଇଥର ହିସାବରେ ଏକ ସପ୍ତାହ ପର୍ଯ୍ୟନ୍ତ ସେବନ କରିବ ।

ଶୁଣ୍ଠି ଚୂର୍ଣ୍ଣ ସଂଯୁକ୍ତ ପକ୍ୱ ଛାଗ ଦୁଗ୍ଧ ପାନକଲେ ହିକ୍କା ନଷ୍ଟ ହୁଏ । ହରିଡ଼ା, ଶୁଣ୍ଠି ବାଟି ଉଷ୍ଣଜଳସହ ସେବନ କଲେ ହିକା ଶ୍ୱାସ ନଷ୍ଟ ହୁଏ ।

ପିପଳି, ଅଁଳା ଓ ଶୁଣ୍ଠି ଏସବୁର ଚୂର୍ଣ୍ଣ ମଧୁ ଓ ଚିନି ସହିତ ବାରମ୍ବାର ଲେହନ କଲେ ହିକ୍କା ଓ ଶ୍ୱାସ ପ୍ରଶମିତ ହୁଏ ।

ପୁରାତନ ଗୁଡ଼, ସର୍ଷପ (ସୋରିଷ) ତୈଳ ସମଭାଗରେ ମିଶାଇ ତିନି ସପ୍ତାହ ଲେହନ କଲେ ଶ୍ୱାସ ନଷ୍ଟ ହୁଏ ।

ସୈନ୍ଧବ ଲବଣ ସହିତ ଅଦା ଭକ୍ଷଣ କରିବ । ଏହା ରୁଚି ଜନକ ଓ ଅଗ୍ନି ଦୀପ୍ତି କାରକ ।

ଧନିଆଁର କ୍ୱାଥ ଚିନି ସହିତ ପ୍ରାତଃକାଳରେ ପାନ କଲେ ତୃଷ୍ଣା ଓ ଦାହ ନଷ୍ଟ ହୁଏ ।

ଦୁରାଲଭାର କ୍ୱାଥରେ କଳ୍ପିତ ଘୃତ ମିଶାଇବା ଅଁଳା ରସସହ ଘୃତ ମିଶାଇ ପାନ କରାଇଲେ ଭ୍ରମ ରୋଗ ଦୂର ହୁଏ ।

ଶତମୂଳିର ରସ ଦୁଇ ତୋଳା, ମିଶ୍ରି ଚାରି ଅଣା (ଓଜନ) ଏକତ୍ର କରି ପ୍ରତ୍ୟହ ତିନିଥର କରି କିଛି ଦିନ ସେବନ କଲେ ଉନ୍ମାଦ ରୋଗୀ ସୁସ୍ଥତା ଲାଭ କରେ ।

Digitized by srujanika@gmail.com

ଶ୍ୱେତ ଅପରାଜିତା ଓ ମଞ୍ଜିଷ୍ଟା ଛାଗ ଦୁଗ୍ଧରେ ପେଷଣ କରି ନେତ୍ରରେ ଅଞ୍ଜନ ଦେଲେ ଉନ୍ମାଦ ରୋଗୀର ଉପକାର ହୁଏ ।

ଶତମୂଳ ରସ ଦୁଗ୍ଧ ସହିତ କମ୍ବା ବ୍ରାହ୍ମୀଶାଗର ରସ, ମଧୁ ସହିତ ସେବନ କଲେ ସର୍ବ ପ୍ରକାର ଅପସ୍ମାର ନଷ୍ଟ ହୁଏ ।

ବଚ ଚୂର୍ଣ୍ଣ ମଧୁ ସହିତ ଭକ୍ଷଣ କଲା ପରେ ଦୁଗ୍ଧାନ୍ନ ଭୋଜନ କଲେ ବହୁକାଳୋତ୍ପନ୍ନ ଘୋରତର ଅପସ୍ମାର ରୋଗ ଭଲ ହେବା ସୁନିଶ୍ଚିତ ।

ଲିମ୍ବପତ୍ର ଓ ଶିମୁଳି ପତ୍ର କ୍ୱାଥ ପ୍ରାତଃକାଳରେ କିଞ୍ଚିତ୍ ମଧୁ ସହିତ ପାନ କଲେ ବାତ ରୋଗ ନଷ୍ଟ ହୁଏ ।

ବେଲପତ୍ର ରସ ଏକ ତୋଳା, ଅଦାରସ ଏକ ତୋଲା, ସୈନ୍ଧବ ଲବଣ ସିକିଏ ତୁଲ ଏକତ୍ର ପ୍ରାତଃ ଓ ସନ୍ଧ୍ୟା ସମୟରେ କିଛି ଦିନ ସେବନ କଲେ ସର୍ବବିଧ ବାତ ରୋଗ ଧ୍ୱଂସ ହୁଏ ।

ଜଟାମାଂସୀ ଚୂର୍ଣ୍ଣ, ଭୂମିକୁଷ୍ମାଣ୍ଡ ଚୂର୍ଣ୍ଣ, ସମଭାଗରେ ଦୁଇ ଅଣା (ଓଜନ) ଦୁଗ୍ଧ ଏକ ଛଟାଙ୍କି ଓ ମିଶ୍ରି ସିକିଏ (ଓଜନ) ଏହି ପରିମାଣରେ ମିଶାଇ (ପ୍ରତିଦିନ) ଦୁଇ ସପ୍ତାହ ସେବନ କଲେ ପକ୍ଷାଘାତ ରୋଗୀ ସବଳ ହୁଏ ।

ଦେବଦାରୁ ଓ ଶୁଣ୍ଠି ସମ ଭାଗରେ ପେଷଣ କରି ଉଷ୍ଣ ଜଳସହ ପାନ କଲେ ହୃଦ୍‌ଗତ ବାତ ବେଦନା ନଷ୍ଟହୁଏ ।

ହରିଦ୍ରା ଓ ଗୁଳୁଚିର କ୍ୱାଥ କିଞ୍ଚିତ୍ ମଧୁସହିତ ସେବନ କଲେ (କଫପ୍ରଧାନ) ବାତ ରକ୍ତ ନଷ୍ଟ ହୁଏ ।

ଗୁଳୁଚି କ୍ୱାଥରେ ଚନ୍ଦ ରତି ଗୁଗୁଲ ପ୍ରକ୍ଷେପ କରି ପାନ କଲେ ବାତ ରୋଗ ନଷ୍ଟ ହୁଏ ।

ଯଷ୍ଟି ମଧୁ, ବେଣାମୂଳ, କ୍ଷୀରୁବଲ୍ଲି ଦୁଗ୍ଧ ଦ୍ୱାରା ବାଟି ପ୍ରଲେପ ଦେଲେ ଦାହ ଓ ବେଦନା ଯୁକ୍ତ ବାତ ରକ୍ତ ଉପଶମ ହୁଏ ।

Digitized by srujanika@gmail.com

ହରିତକୀ, ବାହାଡ଼ା, ଅଁଳା, ପିପଳୀ, ମୁଥା, ଛଟୁକା ଏସବୁ ଚୂର୍ଣ୍ଣ କରି ସମଭାଗରେ ଗ୍ରହଣ ପୂର୍ବକ ଗୁଡ଼ର ଅଣା (ଓଜନ) ହିସାବରେ ମଧୁ ସହିତ ଲେହନ କଲେ ଉରୁସ୍ତମ୍ଭ ନଷ୍ଟ ହୁଏ ।

ହରିଡ଼ା ଏକ ଅଣା (ଓଜନ) ଶୁଣ୍ଠି ଚୂର୍ଣ୍ଣ ଏକ ଅଣା (ଓଜନ) ଗୁଳୁଚ କ୍ୱାଥରେ ପ୍ରକ୍ଷେପ କରି ପାନ କଲେ ଆମବାତ ଉପଶମ ହୁଏ ।

ଶୁଣ୍ଠି ଓ ଗୁଳୁଚ କ୍ୱାଥରେ ପିପଳୀ ଚୂର୍ଣ୍ଣ କିଛି ମିଶାଇ ପାନ କଲେ ଆମବାତ ଓ କଟୀ ଶୂଳ ଶୀଘ୍ର ନାଶ ହୁଏ । ବ୍ରାହ୍ମୀଶାଗକୁ ଘିଅରେ ଭାଜି ଖାଇଲେ ଆମବାତ ବିନଷ୍ଟ ହୁଏ ।

ଦେବଦାରୁ, ବଚ, କୁଡ଼, ହିଙ୍ଗୁ ଓ ସୈନ୍ଧବ ଏହି ସମସ୍ତ ଦ୍ରବ୍ୟ କାଞ୍ଜି ଦ୍ୱାରା ପେଷଣ କରି ଈଷଦୁଷ୍ଣ ଭାବରେ ପେଟରେ ପ୍ରଲେପ ଦେଲେ ଶୂଳ ନଷ୍ଟ ହୁଏ ।

ଅଁଳା ରସ ଏକ ତୋଳା, ଭୁଇଁକଖାରୁ ରସ ଏକ ତୋଳା ଏବଂ ଚିନି ସିକି ଓଜନ ଏପରି ପ୍ରତ୍ୟହ ପ୍ରାତଃକାଳରେ କିଛି ଦିନ ସେବନ କଲେ ଶୂଳ ରୋଗ ବିନଷ୍ଟ ହୁଏ ।

ଘୃତକୁମାରୀ ରସ ଅର୍ଦ୍ଧ ତୋଳା କିଛି ଘୃତ ସହଯୋଗରେ ଭକ୍ଷଣ କଲେ ଗୁଳ୍ମ ରୋଗ ନଷ୍ଟ ହୁଏ ।

ମରିଚ, ପିପଳୀ, ଶୁଣ୍ଠି, ହରିତକୀ, ସୈନ୍ଧବ ଏ ସବୁର ଚୂର୍ଣ୍ଣ ସମ ଭାଗରେ ପ୍ରାତଃ ଓ ରାତ୍ରରେ ଦୁଇ ଅଣା (ଓଜନ) ପରିମାଣ ଉଷ୍ଣ ଜଳ ସହିତ ସେବନ କଲେ ଗୁଳ୍ମ ରୋଗ ନଷ୍ଟ ହୁଏ ।

ଦୁଇ ତୋଳା ଅଁଳା ରସ, ଏକ ଅଣା ଓଜନ ମରିଚ ଚୂର୍ଣ୍ଣ ସହ-ଯୋଗରେ ପାନ କଲେ ରକ୍ତ ଗୁଳ୍ମ ବିନଷ୍ଟ ହୁଏ ।

ଅର୍ଜ୍ଜୁନ ବୃକ୍ଷ ଛଲିର ଚୂର୍ଣ୍ଣ ଏକ ଅଣା (ଓଜନ) ପ୍ରାତଃ ଓ ସନ୍ଧ୍ୟାରେ କିଛି ଦୁଗ୍ଧ ସହିତ ସେବନ କଲେ ହୃଦ୍‌ରୋଗ ରକ୍ତ ଓ ଜୀର୍ଣ୍ଣ ଜ୍ୱର ନଷ୍ଟ ହୁଏ ।

Digitized by srujanika@gmail.com

ଇକ୍ଷୁର ଉଷ୍ଣ ଦୁଗ୍ଧ ସହିତ ଇଷତ୍ ଗୁଡ଼ ମିଶ୍ରିତ କରି ଇଚ୍ଛାନୁରୂପ ପାନ କଲେ ସର୍ବପ୍ରକାର ମୂତ୍ରକୃଚ୍ଛ୍ର, ଶର୍କରା ଓ ବାତ ରୋଗ ନଷ୍ଟ ହୁଏ ।

କଣ୍ଟକାରୀ ରସ ଦୁଇ ତୋଳା, ୫।୭ ଠୋପା ମଧୁ ସହିତ ପାନ କଲେ ମୂତ୍ରକୃଚ୍ଛ୍ର ରୋଗୀର ଉପକାର ହୁଏ ।

କୁଶ ମୂଳ, ବେଣା ମୂଳ ଜଳ ଦ୍ୱାରା ବାଟି ତଳ ପେଟରେ ପ୍ରଲେପ ଦେଲେ ପ୍ରସ୍ରାବ ପରିଷ୍କାର ହୋଇ ପ୍ରସ୍ରାବ ସରଳ ହୁଏ ଏବଂ ଜ୍ୱାଳା ବନ୍ଦ ହୁଏ ।

ଭୂମିକୁଷ୍ମାଣ୍ଡ ଚୂର୍ଣ୍ଣ ଦୁଇ ଅଣା (ଓଜନ) କାଞ୍ଚିକ ଇକ୍ଷୁରସ ସହ ପାନ କଲେ ଅଶ୍ମରୀପୀଡ଼ା ଉପଶମ ହୁଏ ।

ସଜନା ମୂଳ ଛାଲର କ୍ୱାଥ ଇଷଦୁଷ୍ଣ ଅବସ୍ଥାରେ ପାନ କଲେ ଅଶ୍ମରୀ ରୋଗ ବିନଷ୍ଟ ହୁଏ ।

କଞ୍ଚା ହଳଦୀ ରସ ଅର୍ଦ୍ଧ ଛଟାଙ୍କି, କିଞ୍ଚିତ୍ ମଧୁ ସହିତ ପ୍ରାତଃ ଓ ସନ୍ଧ୍ୟା କାଳରେ ପାନ କଲେ ପ୍ରମେହ ପ୍ରଶମିତ ହୁଏ ।

ହରିତକୀ, ଆମଳକୀ ଓ ବାହାଡ଼ାର ଚୂର୍ଣ୍ଣ ସମଭାଗରେ ଏକ ସିକି ମାତ୍ରାରେ ମଧୁ ସହିତ ଲେହନ କଲେ ପ୍ରମେହ ପ୍ରଶମିତ ହୁଏ ।

କଞ୍ଚା ହଳଦୀ ରସ ଦୁଇ ତୋଳା ଗୁଡ଼ ସହିତ ସେବନ କଲେ ଉପକାର ହୁଏ ।

ଯକ୍କଡ଼ି ମିଶ୍ରି ବୀଜ ଚୂର୍ଣ୍ଣ ଏକ ଅଣା ମାତ୍ରାରେ ମଧୁ ସହିତ ତିନି ଥର କରି ପ୍ରତ୍ୟହ ସେବନ କଲେ ବହୁମୂତ୍ର ପୀଡ଼ା ନଷ୍ଟହୁଏ ।

ଏକ ତୋଳା ଗୋକ୍ଷୁର ଏକ ଛଟାଙ୍କି ଜଳରେ ୨।୩ ଘଣ୍ଟା ବତୁରାଇ ତା ସହିତ କିଞ୍ଚିତ୍ ମିଶ୍ରି ଚୂର୍ଣ୍ଣ ମିଶାଇ ପାନ କଲେ ପ୍ରସ୍ରାବର ତୀବ୍ର ଜ୍ୱାଳାଦି ସତ୍ୱର ଉପଶମ ହୁଏ ।

ଗୁଡ଼ ଅଣା (ଓଜନ) ହିଙ୍ଗୁ, ବିକଣ୍ଟୁ, କୁଡ଼, ଯବକ୍ଷାର, ସୈନ୍ଧବ-ଲବଣ ସମଭାଗରେ ଏକତ୍ର ମିଶାଇ ଦୁଇ ଅଣା (ଓଜନ) ମାତ୍ରାରେ

Digitized by srujanika@gmail.com

ପ୍ରାତଃକାଳରେ ଝୋଳ, ଲେମ୍ବୁ ରସ ସହ ସେବନ କଲେ ପ୍ଳୀହା ଓ ଶୂଳ ନଷ୍ଟ ହୁଏ ।

ପଟୋଳ ମୂଳ ଜଳ ଦ୍ୱାରା ବାଟି ଈଷଦୁଷ୍ଣ କରି ପ୍ରଲେପ ଦେଲେ ଯକୃତ୍ ପ୍ଳୀହା ପ୍ରଶମିତ ହୋଇଥାଏ ।

ବଲ୍ ଫଳର ରସକୁ ଛାଣି ଅର୍ଦ୍ଧ ଛଟାଙ୍କିରେ ଦୁଇ ଅଣା ଓଜନର ତ୍ରିକଟୁ ଚୂର୍ଣ୍ଣ ମିଶାଇ ପ୍ରାତଃକାଳରେ ଓ ସନ୍ଧ୍ୟାରେ ସେବନ କଲେ ଏକ ସପ୍ତାହ ମଧ୍ୟରେ ତ୍ରିଦୋଷ ସମ୍ବନ୍ଧୀୟ ଶୋଥ ଉପଶମ ହୋଇଯାଏ ।

ଶ୍ୱେତ କରବୀର ମୂଳ ଜଳ ଦ୍ୱାରା ପେଷଣ କରି ପ୍ରଲେପ ଦେଲେ ଉପଦଂଶ କ୍ଷତ ଶୁଷ୍କ ହୁଏ ।

ଚିରାଇତା, ବାସଙ୍ଗଛାଲି, କଟୁକୀ, ପଟୋଳ ପତ୍ର, ହରିତକୀ, ଆମଳକୀ, ବାହାଡ଼ା, ରକ୍ତ ଚନ୍ଦନ ପ୍ରତ୍ୟୁଷରେ ପାନ କଲେ କୁଷ୍ଠ ରୋଗ ନଷ୍ଟ ହୁଏ ।

କଦଳୀର କ୍ଷାର ଓ ହରିଦ୍ରା ଜଳ ସହିତ ପେଷଣ କରି ପ୍ରଲେପ ଦେଲେ କିଛି ଦିନ ମଧ୍ୟରେ ଶ୍ୱେତ କୁଷ୍ଠ ଉପଶମ ହୁଏ ।

ଟାଙ୍ଗଣାଖଇ, କର୍ପୂର, ଘୃତ ଦ୍ୱାରା ଅଗ୍ନି ତାପରେ ମଲମ ପ୍ରସ୍ତୁତ କରି ଲଗାଇଲେ କୁଷ୍ଠ ରୋଗ ସତ୍ୱର ଉପଶମ ହେବାର ଦେଖାଯାଇ ଥାଏ ।

ଶୁଖିଲା ଅଁଳା ଜଳ ସହିତ ହସ୍ତ ଦ୍ୱାରା ଘର୍ଷଣ କଲେ ଚର୍ମଦଳ ରୋଗାକ୍ରାନ୍ତ ବ୍ୟକ୍ତିର ବିଶେଷ ଉପକାର ହୁଏ ।

ଅନନ୍ତ ମୂଳର କ୍ୱାଥ କିଛି ଦିନ ନିୟମିତ ଭାବରେ ଚର୍ମଦଳାକ୍ରାନ୍ତ ରୋଗୀ ପାନ କଲେ ରୋଗ ଉପଶମ ହୁଏ ।

କୁଡ଼, ବିଡ଼ଙ୍ଗ, ହଳଦ, ସୈନ୍ଧବ ଓ ସର୍ଷପ ଏସବୁ କାଞ୍ଜି ସହିତ ପେଷଣ କରି ପ୍ରଲେପ ଦେଲେ ଦଦ୍ରୁ ରୋଗ ନଷ୍ଟ ହୁଏ ।

ତୁଳସୀ ପତ୍ର ଓ ଲବଣ ଏକତ୍ର (ମର୍ଦ୍ଦନ) ପେଷି ତାର ଦୋର ଯାଦୁରେ ଲଗାଇଲେ ରୋଗ ଭଲ ହୁଏ ।

Digitized by srujanika@gmail.com

ଠାଙ୍ଗଣାଖଇଙ୍କ କର୍ପୂର ଘୃତ ସହ ପାକ କରି ମଲମ ପ୍ରସ୍ତୁତ କରିବ । ଉକ୍ତ ମଲମ ବ୍ୟବହାର କଲେ କୋଡ଼ ଯାଦୁ ବିନଷ୍ଟ ହୁଏ ।

ନିମପତ୍ର, ନିମଗଛ ମୂଳର ଛାଲ, ନିମ ଫୁଲ, ନିମ ଫଳ, ନିମ-ଛାଲି ଏକତ୍ର ବାଟି ପ୍ରତ୍ୟହ ପ୍ରାତଃ ଓ ସନ୍ଧ୍ୟାରେ ଜଳସହ ଏକ ଅଣ (ଓଜନ) ମିଶାଇ ପାନ କଲେ ଅସାଧ୍ୟ ଗଳିତ କୁଷ୍ଠରୋଗ ଆରୋଗ୍ୟହୁଏ ।

କଞ୍ଚା ହଳଦି ରସ ଅର୍ଦ୍ଧ ଛଟାଙ୍କି କିଞ୍ଚିତ୍ ଗୋମୂତ୍ର ସହ ପ୍ରତ୍ୟହ ସେବନ କଲେ ସର୍ବବିଧ କୁଷ୍ଠ ରୋଗ ଦୂର ହେବାର ଦେଖାଯାଏ ।

ହରିତକୀ, ଅମଳାକୀ, ବାହାଡ଼ା, ନିମଛାଲି, ବଚ, ଗୁଳୁଚି, ଦାରୁ-ହଳଦି ଏସବୁର କ୍ୱାଥ ପ୍ରତ୍ୟୁଷରେ ପାନ କଲେ ସର୍ବପ୍ରକାର କୁଷ୍ଠ ରୋଗ ଉପଶମ ହୋଇଥାଏ ।

ପିପଲୀ, ଶୁଣ୍ଠି ଓ ହରିଡ଼ା ସମପରିମାଣରେ ଗ୍ରହଣ କରି ତଦ୍ୱାରା ମୋଦକ ପ୍ରସ୍ତୁତ କରି ସେବନ କଲେ ଅମ୍ଳପିତ୍ତ ଓ ଅଗ୍ନିମାନ୍ଦ୍ୟ ନଷ୍ଟହୁଏ ।

ବାସଙ୍ଗ, ଗୁଳୁଚି ଓ କଣ୍ଟକାରୀ କ୍ୱାଥରେ ମଧୁ ପ୍ରକ୍ଷେପ କରି ପାନ କଲେ ଅମ୍ଳପିତ୍ତ କାଶ, ଶ୍ୱାସ, ଜ୍ୱର ଓ ବାନ୍ତି ନିବାରିତ ହୁଏ ।

ରସୁଣ, ଅଦା ଓ ସଜନାର ରସ ଈଷଦୁଷ୍ଣ କରି କର୍ଣ୍ଣରେ ପକା-ଇଲେ କର୍ଣ୍ଣ ରୋଗ ନଷ୍ଟ ହୁଏ ।

ବରୁଣ ମୂଳର ରସ ଉଷ୍ଣ କରି କର୍ଣ୍ଣରେ ପକାଇଲେ କର୍ଣ୍ଣ ରୋଗ ଉପଶମ ହୁଏ ।

କର୍ଣ୍ଣରେ ପୂଜ ହେଲେ, ଶୂଳ ଜାତ ହେଲେ ବା ଶବ୍ଦ ଜାତ ହେଲେ କିଞ୍ଚିତ୍ ସୈନ୍ଧବ ସଂଯୁକ୍ତ ଛାଗ ମୂତ୍ର ଅଳ୍ପ ଉଷ୍ଣ କରି କର୍ଣ୍ଣରେ ପକାଇଲେ ବିଶେଷ ଉପକାର ହୁଏ ।

ମାଲତୀ ପତ୍ରର ରସ ମଧୁ ସଂଯୁକ୍ତ କରି ଅଳ୍ପ ଉଷ୍ଣାବସ୍ଥାରେ କର୍ଣ୍ଣରେ ପକାଇଲେ କର୍ଣ୍ଣ ରୋଗ (କାନ ପାଚିବା) ନିବାରିତ ହୁଏ ।

ସ୍ତନ୍ୟଦୁଗ୍ଧ ଚକ୍ଷୁରେ ପ୍ରୟୋଗ କଲେ, ବିଶେଷ ପରିମାଣରେ କ୍ଲେଦ ବାହାରି ଚକ୍ଷୁ ରୋଗ ଦୂରୀଭୂତ ହୋଇଥାଏ ।

Digitized by srujanika@gmail.com

ମଧୁ, ଶାମୁକା ଚୂର୍ଣ୍ଣ ଓ ଛେପ (ଥୁ ଥୁ ଦ୍ୱାରା ଯେଉଁ ଛେପ ାହାରେ) ଏକତ୍ର ମର୍ଦ୍ଦନ କରି ଚକ୍ଷୁ ପତାରେ ପ୍ରଲେପ ଦେଲେ, ଦୁଇ ାନ ମଧ୍ୟରେ ଚକ୍ଷୁ ରୋଗ ନଷ୍ଟ ହୋଇଥାଏ ।

ବଟମୂଳ, ଭୃଙ୍ଗରାଜ ମୂଳ ଓ ସୁପାରି ମୂଳ ସମ ସମୟରେ ସେବନ ାଲେ ସର୍ବପ୍ରକାର ଦନ୍ତରୋଗ ଆରୋଗ୍ୟ ହୁଏ ।

ରସୁଣ ଅଗ୍ନିରେ ଗରମ କରି ଦାନ୍ତରେ ଘଷିଲେ ବିଶେଷ (ଦନ୍ତ-ୀଡ଼ାକୁ) ଉପକାର ହୁଏ ।

ପୁରାତନ ଗୁଡ଼ ଓ ଶୁଣ୍ଠି ଦ୍ୱାରା ନସ୍ୟ ଗ୍ରହଣ କଲେ ଶିରଃଶୂଳ ନଷ୍ଟ ହୁଏ ।

ମୁଚୁକୁନ୍ଦ ଫୁଲ ଜଳ ଦ୍ୱାରା ପେଷଣ କରି ପ୍ରଲେପ ଦେଲେ ଶିରରୋଗ ନିବାରିତ ହୁଏ ।

ବିଡ଼ଙ୍ଗ ଓ କୃଷ୍ଣ ତିଳ ସମଭାଗରେ ପେଷଣ କରି ପ୍ରଲେପ ଦେଲେ ଅଥବା ତଦ୍ଵାରା ନସ୍ୟ ଗ୍ରହଣ କଲେ ଶିରରୋଗ ଦୂର ହୁଏ ।

ଚିନି ସଂଯୁକ୍ତ ଦୁଗ୍ଧ ନାଶିକା ଦ୍ୱାରା ପାନ କଲେ, ଅଧକପାଳି ବ୍ୟଥା ଦୂର ହୋଇଥାଏ ।

ନାରିକେଳ ଜଳ କିମ୍ବା ଶୀତଳ ଜଳ ଅଥବା ଘୃତ ନାଶିକା ଦ୍ୱାରା ପାନ କଲେ ଅଧକପାଳି ପୀଡ଼ା ଦୂର ହୁଏ ।

ଯଷ୍ଟି ମଧୁ ଅର୍ଦ୍ଧ ତୋଳା, ଚିନି ଅର୍ଦ୍ଧ ତୋଳା ଏକତ୍ର ବାଟି (ଚାଉଳ ଧୁଆ ଜଳରେ) ପ୍ରାତଃକାଳରେ ପାନ କଲେ ରକ୍ତ ପ୍ରଦର ରୋଗ ନଷ୍ଟ ହୁଏ ।

କୁଶ ମୂଳ ଚାଉଳ ଧୁଆ ଜଳରେ ବାଟି ତିନି ଦିନ ପ୍ରାତଃକାଳରେ ପାନ କଲେ ରକ୍ତପ୍ରଦର ରୋଗ ନଷ୍ଟ ହୋଇଯାଏ ।

ଅଶୋକ ଛାଲର କ୍ୱାଥ ପ୍ରତିଦିନ ପ୍ରାତଃକାଳରେ ପାନ କଲେ ରକ୍ତ ପ୍ରଦର ରୋଗ ନଷ୍ଟ ହୋଇଯାଏ ।

Digitized by srujanika@gmail.com

ଦାରୁ ହଳଦ, ରସାଞ୍ଜନ, ଶରଗଛ, ବାସଙ୍ଗ, ମୁଥା, ବେଲଶୁଣ୍ଠା, ରକ୍ତଚନ୍ଦନ, ଅର୍କମୂଳ ଏସବୁର କ୍ୱାଥରେ ମଧୁ ପ୍ରକ୍ଷେପ କରି ପାନ କଲେ ବେଦନାଯୁକ୍ତ ଶ୍ୱେତ ଓ ରକ୍ତ ପ୍ରଦର ଅଳ୍ପକାଳ ମଧ୍ୟରେ ଆରୋଗ୍ୟ ହୁଏ ।

ଦୁଇ ତୋଳା ପରିମାଣ ଦୁର୍ବାର ରସ ସହିତ ତିନି ରତି ରସାଞ୍ଜନ ଓ ଆଠ ଦଶ ଟୋପା ମଧୁ ମିଶାଇ ପାନ କଲେ ପ୍ରବଳ ରକ୍ତସ୍ରାବ ତତ୍କ୍ଷଣାତ୍ ନିବାରିତ ହୁଏ ।

ଶାମୁକା ଚୂର୍ଣ୍ଣ ଓ ଗବ୍ୟଘୃତ ଏକତ୍ର ବାଟିବାରେ ଯେଉଁ ମଲମ ହୁଏ, ତାକୁ ବ୍ୟବହାର କଲେ ସକଳ ଘା ନିଶ୍ଚୟ ଆରୋଗ୍ୟ ହୁଏ ।

ଗବ୍ୟ ଘୃତରେ ନିମପତ୍ର ଭାଜି, ସେହି ତୈଳ ବ୍ୟବହାର କଲେ ଘା ଶୀଘ୍ର ଶୁଖିଯାଏ ।

ଅଶ୍ୱଗନ୍ଧା ଚୂର୍ଣ୍ଣ ଦୁଇ ଅଣା (ଓଜନ) ମାତ୍ରାରେ ଦୁଗ୍ଧ ଓ ମିଶ୍ରି ସହିତ ପ୍ରାତଃ ଓ ସନ୍ଧ୍ୟାରେ ଏକ ପକ୍ଷ କାଳ ସେବନ କଲେ କୃଶ ବ୍ୟକ୍ତିର ଶରୀର ପୁଷ୍ଟ ହୁଏ ।

ହରିଡ଼ା ଦୁଇ ଛଟାଙ୍କି ହିସାବରେ ପ୍ରତିଦିନ (ବର୍ଷା କାଳରେ) ସୈନ୍ଧବ ସହିତ, (ଶରତ୍ କାଳରେ) ଚିନି ସହିତ, (ହେମନ୍ତ କାଳରେ) ଶୁଣ୍ଠି ସହିତ, (ଶୀତ କାଳରେ) ପିପଳୀ ସହିତ, (ବସନ୍ତ କାଳରେ) ମହୁ ସହିତ ଏବଂ (ଗ୍ରୀଷ୍ମ କାଳରେ) ଗୁଡ଼ ସହିତ ସେବନ କଲେ ସମସ୍ତ ବ୍ୟାଧି ଦୂର ହେବା ସଙ୍ଗେ ସଙ୍ଗେ ଇନ୍ଦ୍ରିୟ ସକଳ ନିର୍ମଳ ହୋଇଥାଏ । ଏହାର ନାମ ହରିତକୀ ରସାୟନ ବା ଋତୁ ହରିତକୀ ।

ଭୂମି କୁଷ୍ମାଣ୍ଡ ଚୂର୍ଣ୍ଣ ଭୂମି କୁଷ୍ମାଣ୍ଡ ରସରେ ଭାବନା ଦେଇ (ରୌଦ୍ର ପକ୍ୱ କରିବା) ଏକ ସିଉକି (ଓଜନ) ମାତ୍ରା ମହୁ ସହିତ ଲେହନ କରି ଦୁଗ୍ଧ ପାନ କରିବ । ଏଥି ଦ୍ୱାରା ଇନ୍ଦ୍ରିୟ ଖୁବ୍ ସବଳ ହୁଏ ।

Digitized by srujanika@gmail.com

ଛାଗର କୋଷ ଜଳରେ ସିଦ୍ଧ କରି ତତ୍ପରେ ଘିଅରେ ଭାଜି ଅଳ୍ପ ପରିମିତ ସୈନ୍ଧବ ଲବଣ ଓ ପିପଲୀ ଚୂର୍ଣ୍ଣ ସହ ପ୍ରତ୍ୟହ ଭକ୍ଷଣ (କିଛି ଦିନ) କଲେ ଅତ୍ୟଧିକ ଇନ୍ଦ୍ରିୟ ପରିଚାଳନାରେ ଶକ୍ତି କମିବା ସଙ୍ଗେ ସଙ୍ଗେ ବଳବୀର୍ଯ୍ୟ ବୃଦ୍ଧି ହୁଏ ।

ଶିମୁଳୀ ବୃକ୍ଷର ମୂଳର ଚୂର୍ଣ୍ଣ ଓ ତାଳମୂଳ ଚୂର୍ଣ୍ଣ ସମପରିମାଣ ଚାରି ଅଣା (ଓଜନ) ପରିମାଣ ଦୁଗ୍ଧ ଓ ମିଶ୍ରି ସହିତ ସେବନରେ ଶୁକ୍ରତାରଲ୍ୟ ବିଦୂରିତ ହୁଏ । ଏହା ବଳ ବୀର୍ଯ୍ୟ ଓ ଶୁକ୍ର ବର୍ଦ୍ଧକ ।






Digitized by srujanika@gmail.com

# ବିଜ୍ଞାପନ

ଗଞ୍ଜାମର ଅନ୍ୟତମ ସୁଲେଖକ, ବହୁ ପୁସ୍ତକ ପ୍ରଣେତା, ବଡ଼-ଖେମଣ୍ଡି "ପୁସ୍ତକ ପ୍ରକାଶ କମ୍ପନି"ର ପ୍ରୋପ୍ରାଇଟର, ରାଜସଭା ପଣ୍ଡିତ, "ରାମଚନ୍ଦ୍ର ସାହିତ୍ୟକୁଞ୍ଜ"ର ସମ୍ପାଦକ ବାବୁ ଭୀମସେନ ପାଣିଗ୍ରାହୀ ପ୍ରଣୀତ ନିମ୍ନଲିଖିତ ପୁସ୍ତକ ଓ ଅନ୍ୟାନ୍ୟ ବହି (ବରହମ୍ପୁର (ଗଂ) ଷ୍ଟୁଡେଣ୍ଟ ଷ୍ଟୋରସ୍, ଗଞ୍ଜାମ ଷ୍ଟୋରସ୍, ହନୁମାନ ପୁସ୍ତକାଳୟ, କଟକ ମୁକୁର ପ୍ରେସ) ନିମ୍ନ ଠିକଣାରେ ବିକ୍ରୟାର୍ଥେ ରକ୍ଷିତ ଅଛି । *ଚିହ୍ନିତ ପୁସ୍ତକଗୁଡ଼ିକ ମାନ୍ଦ୍ରାଜ ଟେକ୍ସ୍ଟ ବୁକ୍ କମିଟି ପାଠ୍ୟ ପୁସ୍ତକ ସ୍ୱରୂପ ଗ୍ରହଣ କରିଛନ୍ତି । ଗ୍ରାହକମାନଙ୍କୁ ଯଥେଷ୍ଟ କମିଶନ ଦିଆଯାଏ ।

| | |
|---|---|
| ପୋଃ ବଡ଼ଖେମଣ୍ଡି | ଶ୍ରୀ ନାରାୟଣ ପାଣିଗ୍ରାହୀ |
| ଜିଃ ଗଞ୍ଜାମ | ମାନେଜର, ପୁସ୍ତକ ପ୍ରକାଶ କମ୍ପନି |

| | |
|---|---|
| ଅବର୍ଣ୍ଣନାଶ୍ରୀ (ଦୃଶ୍ୟକାବ୍ୟ) | ଟ° । |
| * ଛନ୍ଦବନ୍ଧୁ (୨ୟ ସଂ) | ଟ° ୵ |
| * ଶିଶୁସଖା ( ,, ) | ଟ° / |
| * ପିଲାଙ୍କ ନବକଥା | ଟ° /୬ |
| * ବାଳକାବବୋଧ | ଟ° / |
| * ସରଳ ପଣକିଆ ଶିକ୍ଷା | ଟ° ( ୯ |
| ଅନ୍ନପୂର୍ଣ୍ଣା | ଟ° ୵ ୬ |
| ପାପିଷ୍ଠା | ଟ° ୵୬ |
| ମଧୁର ମିଳନ | ଟ° ୵ |
| ସଙ୍ଗୀତ ବଲ୍ଲରୀ | ଟ° /୬ |
| ନବସଙ୍ଗୀତ | ଟ° / |
| ସଙ୍ଗୀତଲହରୀ | ଟ° ( ୬ |
| ବିଧବା କୋଇଲି (୨ୟ ସଂ) | ଟ° ( ୩ |
| ସୀତାବନବାସ ,, | ଟ° ( ୬ |
| ପଞ୍ଚୁ-ପେଟିକା | ଟ° ୵ |
| * ସରଳପଣକିଆ ଶିକ୍ଷା | ଟ° ( ୯ |
| କେଶବ କୋଇଲି | ଟ ( ୩ |
| ଗୋପୀ-ଭାଷା | ଟ° ( ୯ |
| ରସ-କ୍ରୀଡ଼ା | ଟ° / ୬ |
| ଗୁଣସାଗର | ଟ° ୵ |
| ବିଲଙ୍କାରାମାୟଣ | ଟ° ୳୵ |
| ଦଶମ (ଗୋପ) | ଟ° ୳ |
| କାର୍ତ୍ତିକ-ମାହାତ୍ମ୍ୟ | ଟ° ୳ |

୵କବି ଭଞ୍ଜ, ଦୀନକୃଷ୍ଣ ଦାସ, ଯଦୁମଣି, ଜଗନ୍ନାଥଦାସ, ରାଧାନାଥ, ମଧୁସୂଦନ, ସେନାପତି, ମେହେର ପ୍ରଭୃତି ମନୀଷୀମାନଙ୍କ ପୁସ୍ତକ, ରାମାୟଣ ମହାଭାରତାଦି ପୁରାଣ ବିକ୍ରୟ ପାଇଁ ରକ୍ଷିତ ଅଛି ।

Digitized by srujanika@gmail.com